# ପଶୁପକ୍ଷୀଙ୍କ ଦୁନିଆ

ଲେଖକ :

ଶ୍ରୀ ବିଜୟ କେତନ ପଟ୍ଟନାୟକ, ଆଇ.ଏଫ୍.ଏସ୍.

ସ୍ୱତନ୍ତ୍ର ଶାସନ ସଚିବ

ଜଙ୍ଗଲ ଓ ପରିବେଶ ବିଭାଗ, ଓଡ଼ିଶା

ଭୁବନେଶ୍ୱର

ପ୍ରକାଶକ :

**କଳିଙ୍ଗ ଷ୍ଟୁଡେଣ୍ଟସ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

# ପଶୁପକ୍ଷୀଙ୍କ ଦୁନିଆ

ଲେଖକ :
**ଶ୍ରୀ ବିଜୟ କେତନ ପଟ୍ଟନାୟକ,** ଆଇ.ଏଫ୍.ଏସ୍.

ପ୍ରକାଶକ :
କାଳିଚରଣ ତ୍ରିପାଠୀ
**କଳିଙ୍ଗ ଷ୍ଟୁଡେଣ୍ଟସ୍ ଷ୍ଟୋର**
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୨୦୦୧

ଡି.ଟି.ପି. :
ସୋନି ଗ୍ରାଫିକ୍ସ
ଚଣ୍ଡୀରୋଡ୍, କଟକ

ମୂଲ୍ୟ : ଟ୪୦.୦୦

# ସୂଚୀପତ୍ର



# ବାଘ

କଥାରେ କହନ୍ତି, ''ବାଘ ନ ଦେଖିଲେ ବିଲେଇ ଦେଖ ।'' ପ୍ରକୃତରେ କଥାଟି ଅନେକାଂଶରେ ସତ । ବାଘ ଓ ବିଲେଇ ଏକ ପରିବାରର ଅନ୍ତର୍ଭୁକ୍ତ । ସିଂହ ଓ ଚିତାବାଘ ମଧ୍ୟ ଏହି ପରିବାରର ସଦସ୍ୟ । ଏମାନେ ପ୍ରତ୍ୟେକ ମାଂସାଶୀ । ଏହି ପରିବାରର ସଦସ୍ୟମାନଙ୍କର ଶାରୀରିକ ବିଶେଷତ୍ୱ ହେଲା, ଏମାନଙ୍କର ପଞ୍ଝା ଅତିଶୟ ଶକ୍ତ ଓ ଦାନ୍ତ ଏବଂ ନଖଗୁଡ଼ିକ ଖୁବ୍ ତୀକ୍ଷ୍ଣ । ଏଥିପାଇଁ ଏମାନେ ସହଜରେ ଶିକାର କରିପାରିଥାନ୍ତି ।

ଆମ ଦେଶର ପ୍ରତ୍ୟେକ ଭାଷାରେ ବାଘ ସମ୍ବନ୍ଧରେ ବିଭିନ୍ନ ପୌରାଣିକ ତଥ୍ୟ ଶୁଣିବାକୁ ମିଳେ । ଗାଁରେ ବାଘକୁ ''ବାଘମାମୁଁ'' ଡାକିବାର ଅଭ୍ୟାସ ଚଳିଆସିଛି । ଲୋକକଥାରେ ବାଘମାମୁର ବହୁ ସଦ୍‌ଗୁଣ ଥିବା ସତ୍ତ୍ୱେ ପିଠା, ଖିରି, ଖେଚୁଡ଼ି ଆଦି ଖାଇବାକୁ ନ ଦେଲେ ବା କଥାଦେଇ କଥା ନ ରଖିଲେ ବାଘମାମୁ ଭଣଜାମାନଙ୍କ ଉପରେ କ୍ରୁଦ୍ଧ ହୋଇଯିବାର ବର୍ଣ୍ଣନା ଅଛି । ବାଘ ମଧ୍ୟ ଦେବୀ ଦୁର୍ଗାଙ୍କର ବାହନ ।

## କେଉଁଠାରେ ଦେଖାଯାନ୍ତି :-

ଆମ ଦେଶରେ ପଞ୍ଜାବ, ଗୁଜୁରାଟ ଏବଂ ରାଜସ୍ଥାନର ମରୁଭୂମି ଅଞ୍ଚଳକୁ ବାଦ୍‌ଦେଲେ ହିମାଳୟଠୁଁ କୁମାରୀକା ପର୍ଯ୍ୟନ୍ତ ଅନ୍ୟ ସମସ୍ତ ଅଞ୍ଚଳରେ ବାଘ ଦେଖାଯାଇଥାନ୍ତି । ହିମାଳୟ ପର୍ବତର ବରଫ ଉପରେ ମଧ୍ୟ ସମୟେସମୟେ ବାଘର ପାଦଚିହ୍ନ ଦେଖିବାକୁ ମିଳିଥାଏ । ଯଦିଓ ଭାରତର ପରମ୍ପରା ସହିତ ବାଘ ଅତି ନିବିଡ଼ଭାବେ ଜଡ଼ିତ, ତଥାପି ଭାରତ ଏହାର ପ୍ରକୃତ ଜନ୍ମସ୍ଥାନ ନୁହେଁ । ବିଶ୍ୱାସ କରାଯାଏ ଯେ, ରୁଷିଆର ଉତ୍ତରାଞ୍ଚଳରେ ଅର୍ଥାତ୍ ସାଇବେରିଆ ଅଞ୍ଚଳ ହିଁ ବାଘର ଜନ୍ମସ୍ଥାନ । ଭାରତକୁ ଏହାର ପ୍ରବେଶ ଆସାମର ଗିରିପଥ ଦେଇ ଘଟିଛି । ସଂପ୍ରତି ଏସିଆ ମହାଦେଶର ଅର୍ଦ୍ଧାଧିକ ଅଂଶରେ ଅର୍ଥାତ୍ ମାଞ୍ଚୁରିଆ, ଚୀନ, ବର୍ମା, ଥାଇଲାଣ୍ଡ, ଭିଏତନାମ୍ ଏପରିକି ଜାଭା, ସୁମାତ୍ରା ଇତ୍ୟାଦି ଦ୍ୱୀପପୁଞ୍ଜରେ ମଧ୍ୟ ବାଘ ଦେଖାଯାଇଥାନ୍ତି; କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ସିଂହଳ ଦ୍ୱୀପରେ ବାଘ ଦେଖିବାକୁ ମିଳନ୍ତି ନାହିଁ । ଏଥିରୁ ବୁଝାଯାଏ ଯେ, ସିଂହଳ ବା ଶ୍ରୀଲଙ୍କା ଯେତେବେଳେ ଭାରତ ସହିତ ଏକ ସେତୁଦ୍ୱାରା ସଂଯୁକ୍ତ ଥିଲା, ସେହି ସମୟରେ ବାଘମାନେ ଭାରତର ଦାକ୍ଷିଣାତ୍ୟଅଞ୍ଚଳକୁ ଆସିପାରି ନାହାନ୍ତି । ସେମାନେ ଆସିଲାବେଳକୁ ସିଂହଳ ସମୁଦ୍ରଦ୍ୱାରା ଭାରତଠାରୁ ବିଚ୍ଛିନ୍ନ ହୋଇ ସାରିଥିଲା ।

## ଆକୃତି ଓ ରଙ୍ଗ :-

ବାଘର ଶରୀର ଗଠନ ତଥା ଦେହର ରଙ୍ଗ ଅତି ଚମତ୍କାର । ଏହାର ସୁନାପରି ହଳଦିଆ ରଙ୍ଗର ଦେହରେ ଲମ୍ବାଲମ୍ବା କଳାପଟି ପିଠିର ଉପର ଅଂଶରୁ ପେଟ ଆଡ଼କୁ ଲମ୍ବିଥାଏ । ତଳିପେଟରେ ଏହି କଳାପଟି କ୍ରମେ ହାଲ୍‌କାହୋଇ

ଉଭେଇ ଯାଇଥାଏ । ସାଧାରଣତଃ ମାଈ ବାଘର ରଙ୍ଗ ପୁରୁଷ ବାଘ ଅପେକ୍ଷା ଅଧିକ ଆକର୍ଷଣୀୟ । ବାଘର ନିଶ ଖୁବ୍ ଟାଣ ଓ ଦେଖିବାକୁ ଧଳା । ତାର ଏହି ଚିତ୍ରିତ ରଙ୍ଗ ହେତୁ ଜଙ୍ଗଲର ବୁଦା ଆଢୁଆଳରେ ବାଘ ସହଜରେ ନିଜକୁ ଲୁଚାଇ ରଖିପାରେ ।

ବାଘର ଶରୀରର ଲମ୍ବ ଓ ଆକୃତି ସମ୍ବନ୍ଧରେ ଅନେକ ସମୟରେ ଅତିରଞ୍ଜିତ ତଥ୍ୟ ପ୍ରକାଶ ପାଇଥାଏ । ବେଳେବେଳେ ବାର ଫୁଟ ଓ ଷୋଳ ଫୁଟ ଲମ୍ବର ବାଘ ମରାଯାଇଛି ବୋଲି ସମ୍ବାଦ ପ୍ରଚାରିତ ହୋଇଥାଏ; କିନ୍ତୁ ପ୍ରକୃତରେ ଦେଖିଲେ ଆମ ଦେଶର ବାଘ ଅତି ବେଶିରେ ଦଶ ଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇପାରେ । ଏହା ଭିତରେ ବାଘର ଶରୀରର ଲମ୍ବ ସହିତ ଲାଞ୍ଜର ମାପ ମଧ୍ୟ ଅନ୍ତର୍ଭୁକ୍ତ । ପୁରୁଷ ବାଘର ଉଚ୍ଚତା ତିନି ଫୁଟ ଛଅ ଇଞ୍ଚ । ମାଈ ବାଘ ପୁରୁଷ ବାଘଠାରୁ ଉଚ୍ଚତାରେ ଛଅ ଇଞ୍ଚ କମ୍ ହୋଇଥାଏ । ବାଘର ହାରାହାରି ଓଜନ ଦୁଇଶହରୁ ଦୁଇଶହ ତିରିଶ କିଲୋଗ୍ରାମ୍ ଅଟେ । ବାଘୁଣୀର ଓଜନ ବାଘ ଅପେକ୍ଷା ଚାଳିଶରୁ ପଚାଶ କିଲୋଗ୍ରାମ୍ କମ୍ ।

ବାଘର ଆଗଗୋଡ଼ ଦୁଇଟି ପଛଗୋଡ଼ ଅପେକ୍ଷା ଅଳ୍ପ ଛୋଟ ଏବଂ ଆଗ ଗୋଡ଼ରେ ପାଞ୍ଚଟି ଲେଖାଁ ନଖ ଥିବାବେଳେ ପଛ ଗୋଡ଼ରେ ମାତ୍ର ଚାରୋଟି ନଖ ଥାଏ ।

**ପ୍ରାକୃତିକ ବାସସ୍ଥଳୀ :—**

ଭିନ୍ନଭିନ୍ନ ଜଳବାୟୁ ତଥା ଭିନ୍ନଭିନ୍ନ ଜଙ୍ଗଲରେ ବାଘ ଦେଖାଯାଇଥାଏ । ଜଳବାୟୁ ବାଘପାଇଁ ପ୍ରତିବନ୍ଧକ ନୁହେଁ । ସବୁଜ ଚିରହରିତ୍ ଅରଣ୍ୟଠାରୁ ଆରମ୍ଭକରି ପତ୍ରଝଡ଼ା ଦେଉଥିବା ଶୁଷ୍କ, ଖୋଲା ଜଙ୍ଗଲ, କର୍ଦ୍ଦମାକ୍ତ ତରାଇ ଅଞ୍ଚଳ

ତଥା ସୁନ୍ଦରବନର ସନ୍ତସନ୍ତିଆ, ଲବଣାକ୍ତ ଅଞ୍ଚଳରେ ମଧ୍ୟ ବାଘ ଦେଖାଯାଇଥାନ୍ତି ।

ବାଘ ବଞ୍ଚିବାପାଇଁ ବିଶେଷଭାବେ ତିନୋଟି ଜିନିଷ ଦରକାର କରିଥାଏ । ସେଗୁଡ଼ିକ ହେଲା, ତାହାର ଆହାରପାଇଁ ଜଙ୍ଗଲରେ ପ୍ରଚୁର ବନ୍ୟଜନ୍ତୁ, ଖରା ସମୟରେ ଶୋଇବା ପାଇଁ ସୁଶୀତଳ ଛାୟା ଏବଂ ତୃଷା ନିବାରଣପାଇଁ ଜଳର ସୁବିଧା । ସାଇବେରିଆର ଥଣ୍ଡା ଅଞ୍ଚଳରୁ ବାଘର ଉତ୍ପତ୍ତି ହୋଇଥିବାରୁ ଅସହ୍ୟ ଗରମ ଓ ପ୍ରଚଣ୍ଡ ଖରା ସହ୍ୟକରିବା ଏହାପକ୍ଷେ କଷ୍ଟକର ହୋଇଥାଏ ।

## ଚାରିତ୍ରିକ ବିଶେଷତ୍ୱ :–

କାନ, ଆଖି ଓ ନାକ ଏହି ତିନୋଟି ଇନ୍ଦ୍ରିୟର ସାହାଯ୍ୟରେ ବାଘ ଶିକାର କରିଥାଏ; କିନ୍ତୁ ଏହା ମଧ୍ୟରୁ ବାଘର ଶ୍ରବଣେନ୍ଦ୍ରିୟ ଅର୍ଥାତ୍ କାନ ସବୁଠାରୁ ଅଧିକ ଶକ୍ତିଶାଳୀ । ସାମାନ୍ୟ ଟିକିଏ ଖଟ୍‌କିନା ଶବ୍ଦହେଲେ କିମ୍ବା ପତ୍ରଟିଏ ପଡ଼ିଲେ ବାଘ ସତର୍କହୋଇ ଠିଆହୋଇଯାଏ । ବିପଦଆପଦ ସମ୍ପର୍କରେ ବାଘ ଖୁବ୍ ସନ୍ଦେହୀ । ବିପଦର ଆଭାସ ମିଳିଲେ ନିଜକୁ ବିପଦର ସାମନାସାମନି କରିବା ଅପେକ୍ଷା ବରଂ ଉପାସ ରହିବାକୁ ଓ ପଳାୟନ କରିବାକୁ ସେ ଅଧିକ ପସନ୍ଦ କରେ । କାରଣ ବାଘ ଯେତିକି ସାହସୀ, ସେତିକି ଭୀରୁ ମଧ୍ୟ । ସତର୍କତାରେ କାନ ପଛକୁ ବାଘର ଆଖି ଦୁଇଟିର ସ୍ଥାନ ।

ବାଘ ଏମ ନିଶାଚର ପ୍ରାଣୀ । ବିଲେଇ ଭଳି ରାତିର ଅନ୍ଧାର ଭିତରେ ସେ ଅନାୟାସରେ ଦେଖିପାରେ । ଜିପ୍‌ର ହେଡ୍ ଲାଇଟରେ କିମ୍ବା ଟର୍ଚ୍ଚ ଆଲୁଅରେ ବାଘର ଆଖି ଜଳିଲା ଭଳି ଦେଖାଯାଏ । ବାଘ ଦିନବେଳା ଘଞ୍ଚ ଜଙ୍ଗଲ ଓ ବଣବୁଦା ମଧ୍ୟରେ ଲୁଚିରହି ଶୋଇଶୋଇ ସମୟ କଟାଏ ଏବଂ ସନ୍ଧ୍ୟା ହେବାମାତ୍ରେ ଖାଦ୍ୟାନ୍ୱେଷଣରେ ବାହାରିପଡ଼େ ।

ବାଘର ଆଘ୍ରାଣ ଶକ୍ତି କୁକୁର ଏବଂ ଶୃଗାଳ ଭଳି ଏତେ ଉନ୍ନତ ନୁହେଁ । ତଥାପି ଆମମାନଙ୍କ ଘ୍ରାଣଶକ୍ତି ଅପେକ୍ଷା ଏହା ଅଧିକ । ବାଘ କରିଥିବା ଶିକାରକୁ ସେହି ସ୍ଥାନରୁ ଦୂରରେ ନେଇ ଲୁଚାଇ ରଖିଲେ ମଧ୍ୟ ରାତିର ଅନ୍ଧାର ଭିତରେ ବାସ୍ନା ବାରିବାରି ସେ ସେଠାରେ ପହଞ୍ଚିଥାଏ । ଅନେକ ସମୟରେ ବାଘ ବାଘୁଣୀ ଆଡ଼କୁ ତା'ର ଗନ୍ଧଦ୍ୱାରା ହିଁ ଆକୃଷ୍ଟ ହୋଇଥାଏ । ବାଘର ଶ୍ରବଣ ଶକ୍ତିର ପ୍ରଖରତା ସାତଭାଗ ହେଲେ ଦୃଷ୍ଟିଶକ୍ତି ପାଞ୍ଚଭାଗ ଓ ଘ୍ରାଣଶକ୍ତି ତିନିଭାଗ ଅଟେ ।

ବାଘ ଖୁବ୍ ସୁନ୍ଦର ଭାବରେ ସନ୍ତରଣ କରିପାରେ । ବେଳେବେଳେ ଖାଦ୍ୟପାଇଁ ମାଇଲ୍ ମାଇଲ୍ ଧରି ଏ ଦ୍ୱୀପରୁ ସେ ଦ୍ୱୀପକୁ ସେ ପହଁରି୍କରି ଯାଇଥାଏ । ବାଘ ଅତ୍ୟଧିକ ଗରମ ସହିପାରେ ନାହିଁ । ତେଣୁ ଖରାଦିନେ ଏହା ସାରାଦିନ ପାଣି ଭିତରେ ବା କର୍ଦ୍ଦମାକ୍ତ ଜଳରେ ପଡ଼ି ରହିଥାଏ । ବାଘ ଗଛ ଚଢ଼ିପାରେ ନାହିଁ । ସେଇଥିପାଇଁ କହନ୍ତି ବିଲେଇ ବାଘକୁ ଗଛଚଢ଼ା ଶିଖେଇବା ଛଡ଼ା ଆଉ ସବୁକଥା ଶିଖେଇ ଦେଇଛି । ଜଙ୍ଗଲର ଢାଲୁ ତଥା ଉଚ୍ଚ ସ୍ଥାନରେ ବସିବାକୁ ବାଘ ଭଲପାଏ । ଶୀତଦିନେ ବାଘ ପାହାଡ଼ ଦେହରୁ ବାହାରିଥିବା ପଥର ଉପରେ ବସି ଖରା ପୋଉଁଥିବାର ଦୃଶ୍ୟ ଦେଖିବାକୁ ମିଳେ ।

ବାଘକୁ ଆମେ ଯେତେ ଭୟଙ୍କର ବା ସାହସୀ ମନେକରୁ, ପ୍ରକୃତରେ ସେ ତାହା ନୁହେଁ । ଅନେକ ଶୀକାରୀଙ୍କ ମତରେ ବାଘ ଅନେକ ସମୟରେ ବିଲୁଆଠାରୁ ମଧ୍ୟ ଅଧିକ ଭୀରୁତା ପ୍ରଦର୍ଶନ କରିଥାଏ । ସେମାନଙ୍କ ମତରେ କେବଳ ଆଘାତ ପାଇଲେ ହିଁ ବାଘ ଭୟଙ୍କର ହୋଇଉଠେ । ସବୁଠାରୁ ମଜାର କଥା ହେଲା, ଜଙ୍ଗଲର ଜୀବଜନ୍ତୁମାନେ ବାଘକୁ ଦେଖିଲେ ବା ବାଘର ସୁରାକ ପାଇଲେ ଖୁବ୍ ଜୋର୍‌ରେ ଚିତ୍କାରକରି ପରସ୍ପରକୁ ସତର୍କ କରାଇଦିଅନ୍ତି; କିନ୍ତୁ

କେବେହେଲେ ସେମାନେ ଦୌଡ଼ିକରି ପଳେଇବାର ଦେଖାଯାଏ ନାହିଁ । ଅନେକ କ୍ଷେତ୍ରରେ ସେମାନଙ୍କର ଚିତ୍କାର ଶୁଣି ବାଘ ହିଁ ନିଜେ ଫେରିଯାଇଥାଏ । ମଣିଷ ଦେଖିଲେ ବା ଜିପ୍, ନିଆଁ ଓ ଟର୍ଚ୍ଚ ଇତ୍ୟାଦି ଦେଖିଲେ ବାଘ ବାଟଭାଙ୍ଗି ଚାଲିଯାଏ । ଏଥିରୁ ମନେହୁଏ ସତେ ଯେପରି ବାଘ ଏକ ଭଦ୍ର ଜନ୍ତୁ ।

କାର୍ଯ୍ୟକଳାପରେ ବାଘ ଏପରି ଭୀରୁତା ପ୍ରଦର୍ଶନ କଲେ ମଧ୍ୟ ଶରୀର ଗଠନ ଅନୁପାତରେ ଏହା ଖୁବ୍ ବଳବାନ୍ । ଶିକାରକୁ ମୁହଁରେ ଧରି ବାଘ ଭରାନଈ ପାର ହୋଇଯିବାର ପ୍ରମାଣ ଅଛି । ଅନେକ ସମୟରେ ଗାଈ, ବଳଦ ପ୍ରଭୃତି ଶିକାରକୁ ଅନାୟାସରେ ଧରି ଜଙ୍ଗଲ ଭିତରେ କ୍ଷିପ୍ରଗତିରେ ସେ ଦଉଡ଼ିଯାଇଥାଏ ।

ଆବଶ୍ୟକ ନ ଥିଲେ ଗୋଟିଏ ବାଘ ଅନ୍ୟ ବାଘ ସହିତ ଝଗଡ଼ା କରେନାହିଁ । କାରଣ ଜଙ୍ଗଲରେ ପ୍ରତ୍ୟେକ ବାଘ ନିଜନିଜର ସୀମା ବାଣ୍ଟି ନେଇଥାନ୍ତି ଏବଂ ଶିକାରବେଳେ ପ୍ରତ୍ୟେକ ବାଘ ନିଜ ନିଜର ସୀମା ଭିତରେ ରହି ଶିକାର କରନ୍ତି । ଗୋଟିଏ ବାଘ ମରିଗଲା ପରେ ଯାଇ ଅନ୍ୟ ବାଘ ଆସି ତାର ଜାଗା ଅଧିକାର କରେ ।

ବିଲେଇ ପରିବାରର ସମସ୍ତେ ସେମାନଙ୍କର ପରିଷ୍କାର ପରିଚ୍ଛନ୍ନତାପାଇଁ ପରିଚିତ । ବାଘ ମଧ୍ୟ ସେଥିରୁ ବାଦ୍ ପଡ଼ିନାହିଁ । ଦିନର ଅଧିକାଂଶ ସମୟ ଏହା ନିଜକୁ ଜିଭରେ ଚାଟି ସଫାକରେ । ପରିସ୍ରା କଲାବେଳେ ସେ ମାଟିଖୋଳି ପରିସ୍ରା କରେ ଓ ପରେ ମାଟି ଘୋଡ଼ାଇଦିଏ । ଏପରିକି ଶିକାର କରିଥିବା ଜନ୍ତୁକୁ ଖାଇଲାବେଳେ ବାଘ ପଛଗୋଡ଼ଆଡୁ ଖାଇବା ଆରମ୍ଭ କରେ ଏବଂ ହାଡ଼, ଚମ ଇତ୍ୟାଦି ସବୁ ପରିଷ୍କାରଭାବେ ଖାଇଦେଇ କେବଳ ପାକସ୍ଥଳୀ ଜିନିଷକୁ ଅକ୍ଷତ ଅବସ୍ଥାରେ ଛାଡ଼ିଦିଏ ।

## ଆହାର ଓ ଶିକାର କରିବା ପ୍ରଣାଳୀ :-

ବାଘ ମୁଖ୍ୟତଃ ମାଂସାଶୀ । ଯେ କୌଣସି ଅବସ୍ଥାରେ ଶିକାର ମିଳିଲେ ମଧ୍ୟ ସେ ଖାଇଥାଏ । ହରିଣ, ସମ୍ବର, ବଣ ଘୁଷୁରି, ମୃଗ, ମାଙ୍କଡ଼,ବଣକୁକୁଡ଼ା, ମଇଁଷି, ଗୟଳ ଓ ଛେଳି, ମେଣ୍ଢା, ଗାଈ, ଗୋରୁ ଇତ୍ୟାଦି ପଶୁମାନେ ବାଘର ଖାଦ୍ୟ । ସୁନ୍ଦର ବନରେ ଥିବା ବାଘ ମାଛ, କଙ୍କଡ଼ା ଓ ବେଙ୍ଗ ମଧ୍ୟ ଖାଏ । ଆମର ଯେଉଁ ବିଶ୍ୱାସ ଅଛି ଯେ, ବାଘ କେବଳ ନିଜେ ଶିକାର କରିଥିବା ଜନ୍ତୁର ମାଂସ ଖାଏ, ତାହା ସତ ନୁହେଁ । ସେହିପରି ବାଘ କେବଳ ନିଜେ ତଟକା ମାଂସ ଖାଏ ବୋଲି ଯେଉଁମାନେ ବିଶ୍ୱାସ କରନ୍ତି , ସେମାନଙ୍କର ସେହି ବିଶ୍ୱାସ ମଧ୍ୟ ଭୁଲ୍ ଅଟେ । ଭୋକବେଳେ ମଧ୍ୟ ବାଘ ପଚାସଢ଼ା ମାଂସ ଖାଇବାର ଦୃଷ୍ଟାନ୍ତ ରହିଛି ।

କାଉ, ବିଲୁଆ, ଶାଗୁଣା ତଥା ଅନ୍ୟ ମାଂସାଶୀ ପ୍ରାଣୀଙ୍କଠାରୁ ବାଘ ନିଜର ଶିକାରକୁ ଲୁଚେଇ ରଖିବାକୁ ସର୍ବଦା ଚେଷ୍ଟାକରେ । ତେଣୁ ଶିକାରକୁ ସେ ବଣବୁଦା ଆଢୁଆଳକୁ ଘୋଷାରିନିଏ କିମ୍ବା ତାଳପତ୍ର ଓ ମାଟିଦ୍ୱାରା ଘୋଡ଼ାଇବାକୁ ଚେଷ୍ଟାକରେ । ପୁଣି ରାତିହେଲେ ସେହି ଶିକାରକୁ ଖାଇବାକୁ ଆସେ । ବିଲେଇ ପରି ବାଘ ମଧ୍ୟ ସନ୍ଦେହି । ଶିକାରଖାଉଥିବାବେଳେ ଖୁଡ଼କିନା ଟିକିଏ ଶବ୍ଦହେଲେ ବାଘ ସେଠାରୁ ଅପସରିଯାଏ । ଥରକରେ ବାଘ ତିରିଶ, ଚାଳିଶ ସେର ପର୍ଯ୍ୟନ୍ତ ମାଂସ ଖାଇପାରେ ଏବଂ ଥରେ ଖାଇଲେ ଆଉ ପାଞ୍ଚ, ଛଅଦିନ ପର୍ଯ୍ୟନ୍ତ ନ ଖାଇ ମଧ୍ୟ ସେ ରହିପାରେ । ମାସ ଭିତରେ ମାତ୍ର ଚାରି, ପାଞ୍ଚଥର ଶିକାର କରିବାର ସୁଯୋଗ ବାଘ ପାଇଥାଏ ।

ସୂର୍ଯ୍ୟୋଦୟ ପୂର୍ବରୁ ଏବଂ ସୂର୍ଯ୍ୟାସ୍ତ ପରେ ହିଁ ବାଘ ଶିକାର କରିବାକୁ ବାହାରେ । ସାଧାରଣତଃ ରାତି ହିଁ ତା' ପାଇଁ ଶିକାର କରିବାର ଉପଯୁକ୍ତ

ସମୟ । ଶିକାର ଖୋଜିଗଲାବେଳେ ଜଙ୍ଗଲର ପାଦଚଲା ରାସ୍ତା ଓ ପାହାଡ଼ି ରାସ୍ତାରେ ଚାଲିବାକୁ ସେ ଅଧିକ ପସନ୍ଦ କରେ ଏବଂ ଏକା ଏକା ବୁଲି ଶିକାର କରିବାକୁ ଭଲପାଏ । ଶିକାର ଦେଖିଲେ ଛପିଛପି କୌଣସି ଶବ୍ଦ ନକରି ବାଘ ତା'ର ପଛେପଛେ ଯାଏ । ସିଧାସିଧା ବାଘ ଶିକାର ଉପରକୁ କୁଦିପଡ଼େ ନାହିଁ । ପ୍ରଥମେ ସେ ଧକ୍କାଦେଇ ଶିକାରକୁ ତଳେ ପକେଇଦିଏ । ତା'ପରେ ତା' ଉପରକୁ ଝାମ୍ପିପଡ଼େ । ବଡ଼ବଡ଼ ଜନ୍ତୁ ଯଥା–ମଇଁଷି, ଗୟଳ ପ୍ରଭୃତି ଶିକାର କରିବାକୁ ହେଲେ ବାଘ ପ୍ରଥମେ ସେହି ଜନ୍ତୁଟିର ପଛଗୋଡ଼ ଦୁଇଟିକୁ ଆକ୍ରମଣକରି ଭାଙ୍ଗିପକାଏ ଓ ତାକୁ ଅଚଳ କରିଦେଇ ଆଗପଟୁ ଆକ୍ରମଣ କରେ । ବାଘ କୌଣସି ଜନ୍ତୁର ବେକ ଉପରେ କ୍ଷତଚିହ୍ନ ଥିବା ଦେଖିଲେ ତାହା ଅନ୍ୟ ବାଘ ଆକ୍ରମଣରେ ମୃତବୋଲି ଧରିନିଏ ।

**ବାଘ ଓ ମଣିଷ ଶିକାର :–**

ବାଘ ମଣିଷକୁ ଭୟକରେ–ଏକଥା ଶୁଣିବାକୁ ଆଶ୍ଚର୍ଯ୍ୟ ଲାଗିପାରେ, ତଥାପି ଏହା ସତ । ମଣିଷର ଦୁଇପାଦରେ ଚାଲିବା ରୀତି ଓ ତା'ର ପୋଷାକପତ୍ର ପିନ୍ଧିବାର ଢ଼ଙ୍ଗ ବାଘକୁ ଭୟଭୀତ କରାଇଥାଏ । ସାଧାରଣ କ୍ଷେତ୍ରରେ ମଣିଷକୁ ଦେଖିଲେ ବାଘ ପଳାୟନ କରିବା ଶ୍ରେୟସ୍କର ମଣେ । କେବଳ ତଳଲିଖିତ କ୍ଷେତ୍ରରେ ହିଁ ବାଘ ମଣିଷ ଶିକାର କରିଥାଏ ।

ପ୍ରଥମତଃ ବାଘ ଯେତେବେଳେ ବୁଢ଼ା ହୋଇଯାଏ, ଅକର୍ମଣ୍ୟ ହୋଇଯାଏ ଏବଂ ଅନ୍ୟ ବନ୍ୟଜନ୍ତୁମାନଙ୍କୁ ଶିକାର କରିବାରେ ଅକ୍ଷମ ହୁଏ, ସେତେବେଳେ ସେ ମଣିଷ ଶିକାର କରେ । କାରଣ କ୍ଷିପ୍ର ଓ ଧୂର୍ତ୍ତ ବନ୍ୟଜନ୍ତୁଙ୍କ ତୁଳନାରେ ମଣିଷ ଶିକାର କରିବା ତା' ପକ୍ଷରେ ସହଜ ହୋଇପଡ଼େ । ଦ୍ୱିତୀୟତଃ

କୌଣସି ବାଘୁଣୀ ଯେତେବେଳେ ତା'ର ଛୁଆମାନଙ୍କର ଯତ୍ନ ନେଉଥାଏ, ସେ ସମୟରେ ଅକସ୍ମାତ୍ କୌଣସି ମନୁଷ୍ୟ ସେଠି ହାବୁଡ଼ିଗଲେ, ଆତ୍ମରକ୍ଷା ଓ ଛୁଆମାନଙ୍କୁ ରକ୍ଷା କରିବାପାଇଁ ସେ ମଣିଷକୁ ଆକ୍ରମଣ କରିଥାଏ । ତୃତୀୟତଃ ମଣିଷଖିଆ ବାଘର ଛୁଆମାନେ ପିଲାଦିନୁ ମଣିଷ ଶିକାର ଦେଖି ଓ ମଣିଷ ମାଂସ ଖାଇ ବଡ଼ବେଳକୁ ସେମାନେ ମଧ୍ୟ ମଣିଷ ଶୀକାର କରନ୍ତି । ଏହା କ୍ରମେ ବଂଶାନୁଗତିକ ହୋଇଯାଏ । ଏହି କାରଣରୁ ସୁନ୍ଦରବନ ଅଞ୍ଚଳର ସମସ୍ତ ବାଘ, ମଣିଷଖିଆ ବାଘ ଅଟନ୍ତି । ଅନେକ ସମୟରେ ଭୁଲ୍‌ରେ ମଧ୍ୟ ଜଙ୍ଗଲରେ ଘାସ କାଟୁଥିବା ବା କାଠ ଗୋଟାଉଥିବା ମଣିଷ କିମ୍ବା ଗଛପତ୍ର ଗହଳିରେ ଯାଉଥିବା ମଣିଷକୁ ବନ୍ୟଜନ୍ତୁ ଭାବି ବାଘ ଆକ୍ରମଣ କରିଥାଏ; କିନ୍ତୁ ଥରେ ମଣିଷ ପ୍ରତି ଭୟ ତୁଟି ଗଲେ ଓ ଥରେ ମଣିଷ ମାଂସ ଚାଖିଲା ପରେ ବାଘ ବନ୍ୟଜନ୍ତୁଙ୍କୁ ଛାଡ଼ି କେବଳ ମଣିଷ ଶୀକାର କରିବାରେ ହିଁ ଆଗ୍ରହ ପ୍ରକାଶ କରେ । ସେତେବେଳେ ସେ ଖୁବ୍ ଭୟଙ୍କର ହୋଇଉଠେ । ଜଙ୍ଗଲ ପାଖ ଗାଁ ଭିତରୁ, ଚାଷ ଜମିରୁ ବା ନାଳ କୂଳରୁ ମଣିଷକୁ ଉଠାଇନେବାକୁ ସେ ଆଉ ପଛାଏ ନାହିଁ ।

ବାଘର ପାତଳ ମାଂସପେଶୀଯୁକ୍ତ ଶରୀର ଗଠନ ତାକୁ ଆକ୍ରମଣରେ କ୍ଷିପ୍ରତା ଓ ପଟୁତା ଆଣିଦିଏ ।

## ପାରିବାରିକ ଜୀବନ :—

ବାଘ ସାଧାରଣତଃ ଏକା ରହିବାକୁ ଭଲପାଏ; କିନ୍ତୁ ବର୍ଷର କେତେକ ସମୟ ଯୌନ ମିଳନପାଇଁ ବାଘ, ବାଘୁଣୀ ଏକତ୍ର ରହନ୍ତି । ବର୍ଷାଋତୁ ପରେପରେ ହିଁ ବାଘ, ବାଘୁଣୀ ସହିତ ସହବାସ କରିଥାଏ । ଯୌନାବେଶକୁ ଆସିଲେ ବାଘୁଣୀ ଏକପ୍ରକାରର ଶବ୍ଦ କରେ ଓ ତା'ର ପରିସ୍ରା ମଧ୍ୟ ଏହାର ସୂଚନା ଦିଏ । ଫଳତଃ

ବାଘ ତା' ଆଡ଼କୁ ଆକୃଷ୍ଟ ହୁଏ । ଅନେକ ସମୟରେ ଗୋଟିଏ ବାଘ ଦୁଇ ତିନୋଟି ବାଘୁଣୀଙ୍କ ସହିତ ବୁଲୁଥିବାର ଦେଖାଯାଏ । ସେହିପରି ଏହି ସମୟରେ ଗୋଟିଏ ବାଘୁଣୀପାଇଁ ଦୁଇଟି ବାଘଙ୍କ ଭିତରେ ମଧ୍ୟ ଝଗଡ଼ା ହେବାର ଦେଖାଯାଏ । ଗର୍ଭଧାରଣ କରିବାର ୧୦୫ ଦିନରୁ ୧୧୦ ଦିନ ଭିତରେ ଛୁଆ ଜନ୍ମ ହୋଇଥାଏ । ଥରକେ ପ୍ରାୟ ଦୁଇ, ତିନୋଟି ପର୍ଯ୍ୟନ୍ତ ଛୁଆ ଜନ୍ମ ହୋଇଥାନ୍ତି । ଛୁଆ ଜନ୍ମହେବା ଆଗରୁ ବାଘ ବାଘୁଣୀକୁ ଛାଡ଼ି ଚାଲିଯାଏ । ଅନେକ ସମୟରେ ବାଘ ନିଜ ସନ୍ତାନକୁ ମାରି ଖାଇଯିବାର ପ୍ରମାଣ ମଧ୍ୟ ମିଳିଛି । ଏଥିପାଇଁ ଛୁଆଙ୍କୁ ବାଘଠାରୁ ରକ୍ଷା କରିବା ଉଦ୍ଦେଶ୍ୟରେ ବାଘୁଣୀ ମଧ୍ୟ ସେମାନଙ୍କୁ ନେଇ ଦୂରେଇଯାଏ । ପିଲାମାନଙ୍କୁ ଲାଳନପାଳନ କରିବା ଓ ଶିକାର ପଦ୍ଧତି ଶିଖେଇବାର ଦାୟିତ୍ୱ ବାଘୁଣୀର । ଶିଶୁଗୁଡ଼ିକ ତିନି ଚାରିମାସ ପର୍ଯ୍ୟନ୍ତ ମା'ଠାରୁ କ୍ଷୀର ଖାଆନ୍ତି । ଛଅ ମାସର ହେଲାବେଳକୁ ମା' ସହିତ ଶିକାର କରିବାକୁ ଯାଆନ୍ତି ଏବଂ ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ସେମାନେ ମା' ସହିତ ରହନ୍ତି । ଏହି ସମୟ ଭିତରେ ଛୁଆମାନେ ଶିକାର କରିବାରେ ଦକ୍ଷ ହୋଇଯା'ନ୍ତି । ତା'ପରେ ବାଘୁଣୀ ପୁନର୍ବାର ସଙ୍ଗୀ ଖୋଜିବୁଲେ ।

ବାଘ ସାଧାରଣତଃ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ବଞ୍ଚେ; କିନ୍ତୁ ଚାରିବର୍ଷର ହେଲାବେଳକୁ ବାଘୁଣୀ ଛୁଆ ଧାରଣ କରିବାକୁ ସକ୍ଷମ ହୋଇଥାଏ ।

**ଶେଷ କଥା :-**

ବାଘର ମାଂସ, ଚମଡ଼ା, ଦାନ୍ତ ଓ ନଖ ବହୁତ ଦରକାରରେ ଆସେ । ବାଘ ନଖ ଓ ବାଘ ଲାଞ୍ଜର ବାଳକୁ ସୁନା ବା ରୁପାର ତଉଁରୀଆ ବା ତାବିଜକରି ପିଲାମାନଙ୍କ ହାତରେ ରକ୍ଷା କବଚ ଭାବରେ ବାନ୍ଧିଦିଆଯାଏ । ଚୀନ୍‌ରେ ବାଘ

ମାଂସର ଚାହିଦା ଖୁବ୍ ବେଶି । ସେମାନଙ୍କର ବିଶ୍ୱାସ ବାଘର ମାଂସ ଖାଇଲେ ମଣିଷ ବାଘଭଳି ସାହସୀ ଓ ବଳୁଆ ହୋଇଯାଏ । ବାଘର ମୂତ୍ର ଅନେକ ଆଖିରୋଗର ଉପଶମ ପାଇଁ ବ୍ୟବହୃତ ହୋଇଥାଏ । ବାଘ ଚମଡ଼ା ଏପର୍ଯ୍ୟନ୍ତ ମଧ୍ୟ ବହୁ ମୂଲ୍ୟରେ ବିଦେଶକୁ ରପ୍ତାନୀ ହେଉଅଛି । ସଂପ୍ରତି ନିୟମ ପ୍ରଣୟନ କରି ତାହା ବନ୍ଦ କରିଦିଆଯାଇଛି ।

୧୯୯୮ ମସିହାରେ କରାଯାଇଥିବା ବ୍ୟାଘ୍ର ଗଣନାରୁ ଜଣାଯାଇଛିଯେ, ଆମ ରାଜ୍ୟରେ ମୋଟ ୧୯୪ଟି ବାଘ ଅଛନ୍ତି । ତନ୍ମଧ୍ୟରୁ ୫୭ଟି ପୁରୁଷ ବାଘ, ୮୭ଟି ବାଘୁଣୀ ବା ମାଈ ବାଘ ଏବଂ ୩୯ଟି ବାଘ ଛୁଆ ଅଛନ୍ତି । ୧୧ଟି ବାଘଙ୍କର ଲିଙ୍ଗ ଜଣାପଡ଼ିନାହିଁ । ନନ୍ଦନକାନନରେ ପୋଷାହୋଇଥିବା ବାଘମାନଙ୍କର ସଂଖ୍ୟା ଏହି ଗଣନାର ଅନ୍ତର୍ଭୁକ୍ତ ନୁହେଁ ।

ଆଜିକୁ ପଚାଶ ବର୍ଷ ତଳେ ଭାରତରେ ଚାଳିଶ ହଜାର ବାଘ ଥିବାସ୍ଥଳେ, ୧୯୭୨ ଗଣନା ଅନୁଯାୟୀ ଆଉ ମାତ୍ର ୧୭୨୭ଟି ବାଘ ଅଛନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଗୋଳା, ବାରୁଦ ଓ ବନ୍ଧୁକର ଉଦ୍ଭାବନ ଫଳରେ ବାଘ ଶିକାର ଦ୍ରୁତ ଗତିରେ ବଢ଼ି ଚାଲିଲା । ତା' ଛଡ଼ା କ୍ରମାଗତ ଜଙ୍ଗଲ କାଟି ଜନବସତି ସ୍ଥାପନକରିବା କିମ୍ବା ଚାଷ ଜମିରେ ପରିଣତ କରିବା ଦ୍ୱାରା ବାଘର ପ୍ରାକୃତିକ ବାସସ୍ଥଳୀ ମଧ୍ୟ ଲୋପ ପାଇଯିବାକୁ ଲାଗିଲାଣି । ଏହି ପରିସ୍ଥିତିକୁ ହୃଦୟଙ୍ଗମକରି ସରକାର ବାଘକୁ ରକ୍ଷା କରିବା ନିମନ୍ତେ ବିଭିନ୍ନ ପଦକ୍ଷେପ ନେଉଛନ୍ତି ଏବଂ ଯଥାର୍ଥରେ ଜାତୀୟ ପଶୁରୂପେ ବାଘକୁ ସ୍ୱୀକୃତି ଦେଇଛନ୍ତି । ବାଘ ଆମର ଜାତୀୟ ପଶୁ, ଜାତିର ଗୌରବ । ଏହାକୁ ରକ୍ଷା କରିବା ଆମ ସମସ୍ତଙ୍କର ଦାୟିତ୍ୱ ।





# ଧଳା ବାଘ

ତୁଷାର ଧବଳ ଶରୀରରେ ପାଉଁଶିଆ ବା ଫିକା କଳାରଙ୍ଗର ପଟି । ଇଷତ୍ ଗୋଲାପି ଆଭା ରଂଜିତ ପଞ୍ଜା ତଳର ନରମ ଗଦି ଓ ବରଫ ପରି ହିମ୍ ଶୀତଳ ନୀଳ ଆଖି । ଏ ସମସ୍ତ ରୂପ ସଂଭାରରେ ସମୃଦ୍ଧ ଧଳା ବାଘ ଅତି ଚମତ୍କାର ଜୀବଟିଏ । ୧୯୫୧ ମସିହାରେ ମଧ୍ୟପ୍ରଦେଶସ୍ଥିତ ରେୱାର ମହାରାଜା, ଗୋଟିଏ ବାଘୁଣୀ ଶୀକାର କରି ତାର ନଅମାସର ଧଳା ବାଘଛୁଆଟିକୁ ଜୀବନ୍ତ ଧରିଥିଲେ । ୧୯୫୨ ମସିହାରେ ସେ ଏକ ସାଧାରଣ ରଂଗର ବାଘୁଣୀ 'ବେଗମ୍'କୁ ତା ସହିତ ରଖିଥିଲେ । ସେମାନଙ୍କର ମିଳନରେ ତିନିତିନି ଥର ସନ୍ତାନ ଜନ୍ମ ହେଲେ । ସେଗୁଡ଼ିକ ସମସ୍ତେ ସାଧାରଣ ରଂଗର ବାଘ ଥିଲେ । ଦ୍ୱିତୀୟଥର ଜନ୍ମ ହୋଇଥିବା ଗୋଟିଏ ସାଧାରଣ ରଙ୍ଗର ମାଈ ବାଘକୁ ମୋହନ ସହିତ ମିଳନ କରାଇବାପରେ, ୧୯୫୮ ମସିହାରେ ପ୍ରଥମଥର ପାଇଁ ଦେଶରେ ଧଳାବାଘ ଛୁଆ ଜନ୍ମହେଲା । ରେୱାର ମହାରାଜା ୱାଶିଂଟନ୍ ଡି.ସି. ଚିଡ଼ିଆଖାନାକୁ ଗୋଟିଏ ଧଳାବାଘ ବିକ୍ରୀ କରିଥିଲେ ଏବଂ ପରେ ୧୯୬୩ ମସିହାରେ ଭାରତ ସରକାରଙ୍କ

ଅନୁମତି କ୍ରମେ ଆଉ ଦୁଇଟି ଧଳାବାଘ ଛୁଆ ଇଂଲଣ୍ଡର ବ୍ରିଷ୍ଟଲ ଚିଡ଼ିଆଖାନାକୁ ବିକ୍ରୀ କରିଥିଲେ । ଦିଲ୍ଲୀ ଓ କଲିକତା ଚିଡ଼ିଆଖାନାରେ ଏଇ ବଂଶୋଦ୍ଭବ ଧଳାବାଘ ସେତେବେଳେ ଦେଖିବାକୁ ମିଳୁଥିଲେ । ଦୀର୍ଘ ଦିନଧରି ନିଜନିଜର ନିକଟ ସଂପର୍କୀୟ ବା ରକ୍ତ ସଂପର୍କୀୟଙ୍କ ସହିତ ଯଥା– ବାପ, ଝିଅ, ମା, ପୁଅ ବା ଭାଇ-ଭଉଣୀଙ୍କ ମଧ୍ୟରେ ସହବାସ ଘଟୁଥିବା ଫଳରେ ଏମାନଙ୍କର ଗର୍ଭଧାରଣ ସଂଖ୍ୟା ଯଥେଷ୍ଟ କମି ଆସିବା ସଂଗେ ସଂଗେ, ବାଲ୍ୟକାଳରେ ଅନେକ ଧଳାବାଘ ଛୁଆଙ୍କର ଅକାଳ ମୃତ୍ୟୁ ଘଟୁଥିଲା ।

ରେଓ୍ୱାର ବଂଶୋଦ୍ଭବ ମାନଙ୍କୁ ଛାଡ଼ିଦେଲେ, ଅନ୍ୟଗୋଟିଏ ବଂଶୋଦ୍ଭବ ଧଳାବାଘ ନନ୍ଦନକାନନ ଚିଡ଼ିଆଖାନାରେ ମଧ୍ୟ ଦେଖିବାକୁମିଳୁଛି । ଜାନୁୟାରୀ ୮ ତାରିଖ ୧୯୮୦ ମସିହା ଥିଲା, ନନ୍ଦନ କାନନ ଇତିହାସରେ ଏକ ଆନନ୍ଦର ଦିନ । ସେଦିନ ମହାବଳ ବାଘ 'ଦୀପକ' ଓ ବାଘୁଣୀ 'ଗଙ୍ଗା' ଔରସରୁ ତିନୋଟି ଧଳାବାଘ ଛୁଆ ଜନ୍ମହେଲେ । ସେମାନଙ୍କର ନାଁ ଦିଆଗଲା 'ଅଳକା', 'ନନ୍ଦା' ଓ 'ଦେବବ୍ରତ' । ଗୋଟିଏ ଅଣ୍ଡିରା ଓ ଦୁଇଟି ମାଈ ଧଳାବାଘ ଛୁଆ । ସେମାନଙ୍କର ପିତାମାତା ଉଭୟ ସାଧାରଣ ରଂଗର ମହାବଳ ବାଘ । ସେମାନଙ୍କର ବଂଶ ଇତିହାସକୁ ଅନୁଧ୍ୟାନ କଲେ ଦେଖାଯାଏ 'ଦୀପକ' ଓ 'ଗଙ୍ଗା'ଙ୍କର ମା, ବାପା, ଜେଜେମା, ଜେଜେବାପା କେହି ଧଳାରଙ୍ଗର ନଥିଲେ । ତେଣୁ ଏହି ତିନୋଟି ଧଳାବାଘ ଛୁଆଙ୍କର ଜନ୍ମ ବାସ୍ତବିକ ଅଭୁତପୂର୍ବ ଓ ଐତିହାସିକ ଘଟଣା । ଏହି ସଂବାଦ ସମଗ୍ର ବିଶ୍ୱର ବୈଜ୍ଞାନିକ ମାନଙ୍କର ଗବେଷଣାମୂକ ଦୃଷ୍ଟି ଆକର୍ଷଣ କରିପାରିଥିଲା ।

ବାଘ ଛୁଆଙ୍କର ରଙ୍ଗ ବରଫ ପରି ଧଳାଥିଲା ଓ ତା ଉପରେ କଳାକଳା ପଟିଥିଲା । ଆଖି ଗୁଡ଼ିକ ତୁଷାରଧବଳ ନୀଳ ରଙ୍ଗର । ପ୍ରାୟ ୧୧,୧୨ ଦିନ

ପରେ ଛୁଆମାନଙ୍କର ଆଖି ଖୋଲିଲା । ପରେପରେ ଦିଲ୍ଲୀ ଚିଡ଼ିଆଖାନାରୁ ଅଣାଯାଇଥିବା 'ମୋହନ' ବଂଶୋଦ୍ଭବ ଧଳା ବାଘୁଣୀ 'ଦିଆନା' ବା 'ଶୁଭ୍ରା' ସହିତ ନନ୍ଦନକାନନରେ ଜନ୍ମ ନେଇଥିବା ଧଳାବାଘ ଛୁଆ 'ଦେବବ୍ରତ'ର ମିଳନରୁ ୧୯୮୩ ଓ ୧୯୮୫ ମସିହାରେ ଯଥାକ୍ରମେ ପାଞ୍ଚଗୋଟି ଓ ଦୁଇଗୋଟି ଧଳାବାଘଛୁଆ ଜନ୍ମ ହୋଇଥିଲେ । ୧୯୯୮ ମସିହାରେ ବ୍ୟାଘ୍ରଗଣନା ଅନୁଯାୟୀ ନନ୍ଦନ କାନନରେ ୨୦ଟି ପୁରୁଷ ଧଳାବାଘ, ୬ଟି ଧଳାବାଘୁଣୀ ଓ ୪ଟି ଧଳାବାଘ ଛୁଆଥିଲେ । ଏହିପରି ସର୍ବମୋଟ ୩୦ଟି ଧଳାବାଘ ଥିଲେ । କିନ୍ତୁ ମହାବାତ୍ୟା ପରବର୍ତ୍ତୀ ପର୍ଯ୍ୟାୟରେ, କେତେଗୁଡ଼ିଏ ଧଳାବାଘ ମରିଯିବା ହେତୁ, ବର୍ତ୍ତମାନ ପ୍ରାୟ ୧୫ଟି ଧଳାବାଘ ଏଠାରେ ଅଛନ୍ତି ।

ଆଜି ନନ୍ଦନକାନନ ଧଳାବାଘ ପାଳନ ପାଇଁ ସାରାବିଶ୍ୱରେ ଖ୍ୟାତି ଲାଭ କରିଛି । ଅନ୍ୟ ଚିଡ଼ିଆଖାନା ମାନଙ୍କରେ ସ୍ୱବଂଶୋଦ୍ଭବ ଧଳାବାଘ ଛୁଆ କ୍ରମଶଃ ଦୁର୍ବଳ ଓ ରୁଗ୍ଣ ହୋଇ ପଡୁଥିବାର ଦେଖାଯାଉଛି, ମାତ୍ର ନନ୍ଦନକାନନରେ ଜନ୍ମ ହୋଇଥିବା ଏବଂ ଦିଲ୍ଲୀ ଚିଡ଼ିଆଖାନାର 'ମୋହନ' ବଂଶୋଦ୍ଭବ ଭିନ୍ନ ବଂଶର ଧଳାବାଘ ଛୁଆ ହୃଷ୍ଟପୁଷ୍ଟ ହୋଇ ବଢୁଛନ୍ତି । ନନ୍ଦନକାନନ କର୍ତ୍ତୃପକ୍ଷ ଉପରୋକ୍ତ ପଦ୍ଧତିରେ ଧଳାବାଘ ଛୁଆ ଜନ୍ମ କରାଇବାର ବ୍ୟବସ୍ଥା କଲେ, ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ଧଳାବାଘ ଲୋପ ପାଇଗଲେ ମଧ୍ୟ ଏଠାରେ ବହୁକାଳ ପର୍ଯ୍ୟନ୍ତ ଏମାନଙ୍କର ଅସ୍ତିତ୍ୱ ବଜାୟ ରହିବ ।





# ଚିତାବାଘ

ଅନେକ ସମୟରେ ଆମେ ଚିତାବାଘକୁ ବାଘବୋଲି ଭୁଲ୍ କହିଥାଉଁ । ଏହାର କାରଣ ହେଲା, ନା ଆମେ ବାଘକୁ ଭଲଭାବରେ ଦେଖିଛୁ ନା, ଚିତାବାଘକୁ । ବାଘଭଳି ଦେହସାରା ପଟାପଟା ଦାଗ ନ ଥାଇ, ଚିତା ପଡ଼ିଲା ଭଳି ଏହାର ଦେହସାରା ଗୋଲ ଗୋଲ ଦାଗ ଥିବାରୁ ଏହା ଚିତା ବାଘ ନାମରେ ପରିଚିତ । ଭାରତର ବନ୍ୟ ପ୍ରାଣୀମାନଙ୍କ ମଧ୍ୟରୁ ଶିକାରୀ ହିସାବରେଁ ଚିତାର ଯଥେଷ୍ଟ ସୁନାମ ରହିଛି ।

**ବିସ୍ତୃତି–**

ଚିତାବାଘ ଆମ ଦେଶରେ ପ୍ରାୟ ସବୁ ଅଞ୍ଚଳରେ ଦେଖାଯାନ୍ତି । ହିମାଳୟର ୬୦୦୦ ଫୁଟରୁ ୭୦୦୦ ଫୁଟ ଉଚ୍ଚତାରେ ମଧ୍ୟ ଚିତାବାଘ ଦେଖିବାକୁମିଳେ । ବାଘ ଓ ସିଂହ ଭଳି ଚିତାବାଘ ମଧ୍ୟ ଉତରାଞ୍ଚଳରୁ ଗିରିପଥ ଦେଇ ଭାରତକୁ ପ୍ରବେଶ କରିଛି । ସିଂହଳରେ ଯଦିଓ ବାଘ ନାହାନ୍ତି; କିନ୍ତୁ ଚିତାବଘ ଅଛନ୍ତି । ଏଥିରୁ ସୂଚନା ମିଳେ ଯେ, ବାଘ ଆସିବା ଆଗରୁ ଚିତାବାଘ ଭାରତରେ ପ୍ରବେଶ କରିଛି । ସେ ସମୟରେ ସିଂହଳ ବା ଶ୍ରୀଲଙ୍କା ସେତୁଦ୍ୱାରା

ଭାରତ ସହିତ ସଂଯୁକ୍ତ ଥିଲା । କିନ୍ତୁ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜରେ ଚିତାବାଘ ନାହାନ୍ତି ବୋଲି ପ୍ରମାଣ ମିଳିଛି ।

ଚିତାବାଘର ଶରୀର ଗଠନ, ପ୍ରକୃତି ଓ ଆଚାର ବ୍ୟବହାର ଏହାକୁ ଯେକୌଣସି ପ୍ରକାର ସ୍ଥାନରେ ରହିବାପାଇଁ ଉପଯୁକ୍ତ କରିଥାଏ । ସାମାନ୍ୟ ଆଡୁଆଳରେ ମଧ୍ୟ ଏହା ଆଶ୍ରୟ ନେଇପାରେ ଓ ନିଜକୁ ଛପାଇ ରଖିପାରେ । ତେଣୁ ଗଛଲତା ହୀନ ପାହାଡ଼ ଓ ବୁଦୁବୁଦୁକିଆ ଜଙ୍ଗଲରେ ମଧ୍ୟ ଚିତାବାଘମାନେ ରହିପାରନ୍ତି । ଏମାନେ ମାତ୍ରାଧିକ ଉତ୍ତାପ ଓ ଥଣ୍ଡା ମଧ୍ୟ ସହ୍ୟ କରିପାରନ୍ତି ।

## ଆକୃତି ଓ ରଙ୍ଗ :-

ଶାରୀରିକ ଆକୃତିରେ ବାଘ ତୁଳନାରେ ଯଥେଷ୍ଟ ଛୋଟ ହେଲେ ମଧ୍ୟ ଚିତାବାଘ ଖୁବ୍ ଧୂର୍ତ୍ତ, ଚତୁର ଏବଂ ଦୁର୍ଦ୍ଦାନ୍ତ । ଏମାନଙ୍କ ଦେହ ହାଲୁକା, ଲମ୍ବା ଓ ପତଳା ଏବଂ ଏମାନେ ପାଦ ଉପରେ ଗୋଡ଼ରଖି ଠିଆ ହୋଇପାରନ୍ତି । ଏମାନଙ୍କର ମୁଣ୍ଡ ଛୋଟ, ଲାଞ୍ଜ ଲୋମଶ ଏବଂ ଲମ୍ବା । ଦେହର ରଙ୍ଗ ବାଦାମୀ ଓ ଦେହସାରା ଫୁଲ ପଡ଼ିଲାଭଳି ବିଭିନ୍ନ ଆକୃତିର କଳାକଳା ଦାଗମାନ ଭରିଥାଏ । ଦେହର ଲୋମ ଗହଳିଆ; କିନ୍ତୁ ଖୁବ୍ ନରମ । ବିଲେଇ ପରିବାର ଭିତରେ ଚିତାବାଘ ଦେଖିବାପାଇଁ ସବୁଠାରୁ ସୁନ୍ଦର । ଦେହର ଚିତ୍ର ବିଚିତ୍ର ରଙ୍ଗ, ଗଛପତ୍ର ଭିତରେ ଆତ୍ମଗୋପନ କରିବାକୁ ଚିତାବାଘକୁ ସାହାଯ୍ୟ କରେ ।

ଚିତାବାଘର ଦୈର୍ଘ୍ୟ ହାରାହାରି ସାତଫୁଟ ବା ତହିଁରୁ କମ୍ ଏବଂ ଏହା ମଧ୍ୟରେ ତା'ର ଦୁଇଫୁଟ ଛଅ ଇଞ୍ଚରୁ ତିନିଫୁଟ ଲମ୍ବ ବିଶିଷ୍ଟ ଲାଞ୍ଜର ଦୈର୍ଘ୍ୟ ମଧ୍ୟ ଅନ୍ତର୍ଭୁକ୍ତ । ତଳଠାରୁ କାନ୍ଧ ପର୍ଯ୍ୟନ୍ତ ଏହାର ଉଚ୍ଚତା ଅଢ଼େଇ ଫୁଟ । ସ୍ତ୍ରୀ ଚିତାର ଲମ୍ବ ପୁରୁଷଠାରୁ ଫୁଟେ କମ୍ । ସେହିପରି ପୁରୁଷ ଚିତାର ଓଜନ ପ୍ରାୟ

୬୦ରୁ ୭୦ କିଲୋଗ୍ରାମ ହୋଇଥିବା ସ୍ଥଳେ, ସ୍ତ୍ରୀର ଓଜନ ୩୦ରୁ ୪୫ କିଲୋଗ୍ରାମ ହୋଇଥାଏ । ଭାରତର ବିଭିନ୍ନ ସ୍ଥାନରେ ଦେଖାଯାଉଥିବା ଚିତାବାଘମାନଙ୍କର ଆକୃତି ଓ ଓଜନରେ ଯଥେଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

**ଆଚାର ବ୍ୟବହାର :-**

ଶାରୀରିକ ଗଠନ ଓ ପ୍ରକୃତି ଚିତାବାଘକୁ କୁଶଳୀ ଶିକାରୀରେ ପରିଣତ କରିଛି । ଏହାର ପତଳା ଓ ହାଲୁକା ଦେହ, ତିଳେମାତ୍ର ଶବ୍ଦ ନ କରି ଚାଲିବା, ତୀକ୍ଷ୍ଣ ଶ୍ରବଣ ଶକ୍ତି, ଚଳଚଞ୍ଚଳତା ଏବଂ ଅଦମ୍ୟ ସାହସ ତଥା ବଳର ଏକତ୍ର ସମାବେଶ ଅନ୍ୟ ପ୍ରାଣୀମାନଙ୍କ ନିକଟରେ ବିରଳ ।

ବାଘପରି ଚିତାବାଘର ଶ୍ରବଣ ଶକ୍ତି ମଧ୍ୟ ଦୃଷ୍ଟିଶକ୍ତି ଓ ଘ୍ରାଣଶକ୍ତି ଅପେକ୍ଷା ଅଧିକ କ୍ଷମତାସମ୍ପନ୍ନ । ଗଛ ଉପରକୁ ଓ ଘରର ଚାଳ ଉପରକୁ ଚଢ଼ିବାରେ ସେ ଧୁରନ୍ଧର । ଅନେକ ସମୟରେ ଚିତାବାଘ ନିଜର ଶିକାରକୁ ଗଛ ଉପରେ ଲୁଚାଇ ରଖିଥାଏ । ନଦୀକୂଳ, ଉପତ୍ୟକା ଓ ଅଧିତ୍ୟକା ଅପେକ୍ଷା ଉଚ୍ଚଜାଗାରେ ଚଲାବୁଲା କରିବାକୁ ଚିତାବାଘ ଭଲପାଏ । ଜଙ୍ଗଲରେ କଟା ହୋଇଥିବା ଗଛ ଗଣ୍ଡିରେ ଚିତାବାଘ ଅନେକ ସମୟରେ ଅଳସ ଭାଙ୍ଗୁଥିବାର ବା ତା'ଉପରେ ବସି ଖରା ପୋଉଁଥିବାର ଦେଖାଯାଏ । ମଞ୍ଚା ଉପରେ ବସିଥିବା ଶିକାରୀ ବାଘଠାରୁ ରକ୍ଷା ପାଇଯାଇପାରେ; କିନ୍ତୁ ଚିତା ବାଘଠାରୁ ନୁହେଁ ।

ନିଜ ଶରୀରକୁ ସଙ୍କୁଚିତ କରିବାର ଅପୂର୍ବ କ୍ଷମତା ଚିତାବାଘର ଅଛି । ଦିଲ୍ଲୀ ଚିଡ଼ିଆଖାନାରୁ 'ଭୋଲା' ନାମକ ଗୋଟିଏ ଚିତାବାଘ ରହୁଥିବାପିଞ୍ଜରାର ଲୁହାରଡ଼ ଦେଇ ବାହାରି ଯାଇଥିଲା । ଏହି କାରଣରୁ ବାଘକୁ ଯେପରି ଚିଡ଼ିଆଖାନାରେ କେବଳ ବଡ଼ବଡ଼ ପାଚେରୀ ପକେଇ ଖୋଲା ଆକାଶ ତଳେ ଛାଡ଼ି ଦିଆଯାଇଥାଏ, ଚିତାବାଘକୁ ସେମିତି ଛାଡ଼ି ଦିଆଯାଏନାହିଁ । କାରଣ ଏହା

ଅତି ସହଜରେ ପାଚେରୀ ଚଢ଼ି ଉପରବାଟେ ବାହାରିଯାଇ ପାରେ । ତେଣୁ ଚିତାବାଘ ପାଇଁ ଉପରେ ମଧ୍ୟ ଛୋଟଛୋଟ ତାରଜାଲି ଘେରେଇବାକୁ ପଡ଼େ ।

ପାଣିକୁ ଚିତାବାଘର ଭୀଷଣ ଭୟ । ପାଣିରେ ପହଁରିବାକଥା ନାଁ ଶୁଣିଲେ ଚିତାବାଘ ଛାନିଆ । ବାଘ ଭଳି ଚିତାବାଘ ଖୁବ୍ ଜୋରରେ ଗର୍ଜନ କରିପାରେ ନାହିଁ । କରତରେ କାଠ କାଟିଲାବେଳେ ଯେପରି ଘୁଁ ଘୁଁ ଶବ୍ଦ ହୁଏ, ସେହିପରି ମୃଦୁଶବ୍ଦ ଚିତାବାଘ କରିଥାଏ । ସ୍ତ୍ରୀ ଚିତା ପୁରୁଷକୁ ତା ଆଡ଼କୁ ଆକର୍ଷଣ କରିବାପାଇଁ ଅନେକ ସମୟରେ ଏହି ପ୍ରକାର ଶବ୍ଦ ମଧ୍ୟ କରିଥାଏ । ରାଗିଗଲେ ଚିତାବାଘ ଛିଙ୍କିବାକୁ ଆରମ୍ଭ କରେ ।

ଚିତାର ଶାରୀରିକ ଶକ୍ତି ପ୍ରଚୁର । ବେଳେବେଳେ ବଡ଼ ହରିଣକୁ ଶିକାର କରି ସେହି ଶିକାରକୁ ମୁହଁରେ ଧରି ଲୁଚାଇବା ଉଦ୍ଦେଶ୍ୟରେ ସେ ଗଛ ଉପରକୁ ଚଢ଼ିଯାଇଥିବାର ଦେଖାଯାଇଛି ।

## ଶିକାର କରିବା ପ୍ରଣାଳୀ :-

ଚିତାବାଘ ହରିଣ, ଛେଳି, ମେଣ୍ଢା ଓ ଅନ୍ୟାନ୍ୟ ଛୋଟ ଜୀବଜନ୍ତୁ ଏବଂ ପକ୍ଷୀ ଶିକାର କରିଥାଏ । ଏହା ପ୍ରଚଣ୍ଡ ବେଗରେ ଶିକାର ପଛରେ, ଗୋଡ଼ାଏ ଏବଂ ଏ ସମୟରେ ଏମାନଙ୍କର ଗତିର ବେଗ ଘଣ୍ଟାରେ ପ୍ରାୟ ସତୁରି କିଲୋମିଟର ହୋଇଥାଏ ।

ରାତିରେ ଶିକାର ନମିଳିଲେ, ଚିତାବାଘ ଦିନରେ ଶିକାର କରିବାକୁ ବାହାରିପଡ଼େ । ସୂର୍ଯ୍ୟର ଉତ୍ତାପ ଏହା ବାଘ ଅପେକ୍ଷା ଅଧିକ ସହ୍ୟ କରିପାରେ । ଗାଈଗୋରୁ, ହରିଣ, ସମ୍ବର, ଶିଆଳ, ମାଙ୍କଡ଼, ଝିଙ୍କପକ୍ଷୀ ଇତ୍ୟାଦି ଯାହା ମିଳେ ତାହା ଚିତାବାଘ ଖାଇଥାଏ । ଗଛଉପରେ ଚଢ଼ି ମଧ୍ୟ ସେ ମାଙ୍କଡ଼ ଶିକାର କରେ । ବେଳେବେଳେ ପକ୍ଷୀ, ସରୀସୃପ ଓ କଙ୍କଡ଼ା ଆଦି ଖାଇବାର ମଧ୍ୟ

ଦେଖାଯାଏ । କୁକୁର ମାଂସ ଚିତାବାଘର ସବୁଠୁ ପ୍ରିୟ ଖାଦ୍ୟ । ଅନେକ ଫରେଷ୍ଟ ଅଫିସରଙ୍କର ପୋଷା କୁକୁରମାନଙ୍କୁ ଚିତାବାଘ ଉଠେଇ ନେଇଥିବାର ପ୍ରମାଣ ଅଛି ।

ଶିକାରକୁ ଖାଇବା ପ୍ରଣାଳୀରୁ ଜଣାପଡ଼ିଯାଏ ଯେ ଏହା ବାଘର ଶିକାର ନା ଚିତାବାଘର ଶିକାର । ବାଘ ଅତି ପରିଷ୍କାର ଭାବରେ ପଛଗୋଡ଼ଆଡୁ ତା'ର ଶିକାରକୁ ଖାଇବାକୁ ଆରମ୍ଭ କରିଥାଏ । କିନ୍ତୁ ଚିତାବାଘର ଖାଇବା ପ୍ରଣାଳୀ ନିହାତି ଅପରିଷ୍କାର । ଏହା ପ୍ରଥମେ ପେଟରୁ ଖାଇବାକୁ ଆରମ୍ଭ କରେ । ଫଳରେ ଅନ୍ତଃନାଡ଼ୀ ଓ ମଇଳା ପେଟରୁ ବାହାରି ପାଖସାରା ବିଛେଇ ହୋଇପଡ଼େ । ପଚାସଡ଼ା ମାଂସ ଖାଇବାରେ ତା'ର କିଛି ଆପତ୍ତି ନାହିଁ; କିନ୍ତୁ ଖାଇଲାବେଳେ ସେ ଖୁବ୍ ସତର୍କ ଥାଏ । ଯଦି ଶିକାର ପାଖରେ ମଣିଷର ଗନ୍ଧ ଚିତାବାଘ କୌଣସି ପ୍ରକାର ବାରିପାରେ, ତେବେ ଯେତେ ଭୋକିଲା ଥିଲେ ବି ସେ ଆଉ ଶିକାର ନିକଟକୁ ଫେରେନାହିଁ ।

ମଣିଷ ସହିତ ଚିତାବାଘ ଗୃହପାଳିତ ପଶୁମାନଙ୍କୁ ମଧ୍ୟ ଅନେକ ସମୟରେ ଉଠେଇ ନେଇଥାଏ । ମଣିଷଖିଆ ଚିତାବାଘ, ମଣିଷଖିଆ ବାଘଙ୍କଠାରୁ ଅଧିକ ବିପଜ୍ଜନକ । ଘରଭିତରୁ ଛୁଆଙ୍କୁ ଉଠେଇନେବା, ନିର୍ଜନ ରାସ୍ତାରେ ଯାଉଥିବା ଶଗଡ଼ ଭିତରୁ ଲୋକଙ୍କୁ ଉଠେଇ ନେବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ରାସ୍ତାକଡ଼ରେ ଥିବା ଗଛର ନୁଆଁଣିଆ ଡାଳରେ ବସି ଚିତାବାଘ ତା'ର ଶିକାରପାଇଁ ଅପେକ୍ଷା କରିଥାଏ ।

## ପାରିବାରିକ ଜୀବନ :–

ଚିତାବାଘମାନଙ୍କ ପାଇଁ ସେମିତି କିଛି ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ନାହିଁ । ସେହିପରି କେତେ ସମୟ ଅନ୍ତରରେ ଏହା ଗର୍ଭଧାରଣ କରିଥାଏ, ତାହା ମଧ୍ୟ

ନିର୍ଦ୍ଦିଷ୍ଟ ଭାବରେ ଜଣାନାହିଁ । ଚିଡ଼ିଆଖାନାରେ ଥିବା ଚିତାବାଘମାନଙ୍କ ଉପରେ ଗବେଷଣା କରି ଯାହା ଜଣାଯାଇଛି; ଏମାନେ ପ୍ରାୟ ବାର ସପ୍ତାହରୁ ତେର ସପ୍ତାହ ପର୍ଯ୍ୟନ୍ତ ଗର୍ଭଧାରଣ କରିଥାନ୍ତି ଏବଂ ଥରକେ ତିନିରୁ ଚାରୋଟି ଛୁଆଜନ୍ମ କରିଥାନ୍ତି । ଜନ୍ମ ହେବାର ପନ୍ଦରରୁ କୋଡ଼ିଏ ଦିନ ପର୍ଯ୍ୟନ୍ତ ଛୁଆମାନଙ୍କର ଆଖି ଖୋଲି ନଥାଏ ।

ଛୁଆମାନଙ୍କୁ ମା' ଜଙ୍ଗଲର ଗୋଟିଏ ଜାଗାରେ ସବୁଦିନ ପାଇଁ ରଖେନାହିଁ । ନିରାପତ୍ତା ଦୃଷ୍ଟିରୁ ସେମାନଙ୍କୁ ବାରମ୍ବାର ସ୍ଥାନାନ୍ତରିତ କରୁଥାଏ । ବେଳେବେଳେ ପୁରୁଷ ଚିତାବାଘ ମଧ୍ୟ ଛୁଆମାନଙ୍କୁ ଲାଳନପାଳନରେ ସାହାଯ୍ୟ କରେ ।

**ଶେଷ କଥା :-**

ନିଜର ଚତୁରପଣିଆ ଓ ସତର୍କତା ଯୋଗୁଁ ଚିତାବାଘ ଅନେକ ସମ୍ଭାବ୍ୟ ବିପଦରୁ ରକ୍ଷା ପାଇଯାଇଥାଏ । ଆମ ଜଙ୍ଗଲରେ ବାଘ ତୁଳନାରେ ଚିତାବାଘ ଯଥେଷ୍ଟ ଅଧିକ ସଂଖ୍ୟକ ଥିଲେ ମଧ୍ୟ, ସେମାନଙ୍କ ମଧ୍ୟରୁ କ୍ୱଚିତ୍ କେବେ ଶିକାରୀ ହାବୁଡ଼ରେ ପଡ଼ି ମୃତ୍ୟୁବରଣ କରିଥାନ୍ତି । ଚିତାବାଘମାନଙ୍କୁ ପୋଷା ମନେଇବା ଖୁବ୍ ସହଜ । ପ୍ରାଚୀନ ସମୟରେ ଶିକାର କରିବା ପାଇଁ ଏମାନଙ୍କୁ ତାଲିମ୍ ଦିଆଯାଉଥିଲା । ସମ୍ରାଟ ଆକବରଙ୍କର ହଜାରେ ପୋଷା ଚିତାବାଘ ଥିଲେ ବୋଲି ଶୁଣାଯାଏ ।

୧୯୯୮ ମସିହାରେ ରାଜ୍ୟବ୍ୟାପି କରାଯାଇଥିବା ଗଣନାରୁ ଜଣାଯାଏ, ଓଡ଼ିଶାରେ ମୋଟ ଚିତାବାଘ ସଂଖ୍ୟା ୪୦୧ । ସେଥିରୁ ପୁରୁଷ ୧୫୧, ମାଈ ଚିତାବାଘ ୧୭୯, ଛୁଆ ୫୪ ଏବଂ ଲିଙ୍ଗ ନିର୍ଣ୍ଣୟ ହୋଇ ନଥିବା ଚିତାବାଘ ସଂଖ୍ୟା ୧୭ ଅଟେ । ନନ୍ଦନକାନନ ଚିଡ଼ିଆ ଖାନାରେ ମାତ୍ର ୧୦ଟି ଚିତାବାଘ ଅଛନ୍ତି ।



# ସିଂହ

ସିଂହ, ଆମ ଦେଶରେ ପଶୁରାଜ ନାମରେ ଅଭିହିତ । ବାଘକୁ ଭାରତର ଜାତୀୟ ପଶୁରୂପେ ଗ୍ରହଣ କରାଯିବା ଆଗରୁ ସିଂହ ଭାରତର ଜାତୀୟ ପଶୁ ଥିଲା । ଆମର କଳା, ସଂସ୍କୃତି, ପୁରାଣ ଓ ପୌରାଣିକ କାବ୍ୟ କବିତାରେ ସିଂହର ନାମ ଏକାଧିକବାର ଉଲ୍ଲେଖ ଥିବାର ଦେଖିବାକୁ ମିଳେ । ଆମ ସଂସ୍କୃତିର ପ୍ରତୀକ ଜଗତବିଖ୍ୟାତ ଶ୍ରୀଜଗନ୍ନାଥ ମନ୍ଦିରର ଦ୍ୱାରଦେଶ ସିଂହଦ୍ୱାର ନାମରେ ପରିଚିତ । ଆମ ରାଜା ମହାରାଜାଙ୍କର ବସିବା ଆସନକୁ 'ସିଂହାସନ' କୁହାଯାଏ । ଅନେକ ପ୍ରାଚୀନ ମନ୍ଦିର ଗାତ୍ରରେ ସିଂହର ପ୍ରତିମୂର୍ତ୍ତି ଖୋଦିତ ଥିବାର ଦେଖିବାକୁ ମିଳେ । ପୁରାଣରେ ସିଂହ ମା' ଦୁର୍ଗାଙ୍କର ବାହନରୂପେ ବର୍ଣ୍ଣିତ ହୋଇଅଛି । ବିଷ୍ଣୁଙ୍କର ପ୍ରସିଦ୍ଧ ଦଶାବତାର ମଧ୍ୟରୁ ନରସିଂହ ଅବତାରରେ ସିଂହକୁ ଯଥେଷ୍ଟ ପ୍ରାଧାନ୍ୟ ଦିଆଯାଇଛି । କେବଳ ଏତିକି ନୁହେଁ, ଆମର ଜାତୀୟ ପ୍ରତୀକ ଅଶୋକସ୍ତମ୍ଭ ମଧ୍ୟ ଚାରି ଗୋଟି ସିଂହ ଓ ଅଶୋକ ଚକ୍ରକୁ ନେଇ ଗଠିତ ।

ବିସ୍ତୃତି :-

ଯଦିଓ ଭାରତର ପରମ୍ପରା ସହିତ ସିଂହ, ନିବିଡ଼ଭାବେଜଡ଼ିତ, ତଥାପି ଭାରତ ଏହାର ପ୍ରକୃତ ଜନ୍ମସ୍ଥାନ ନୁହେଁ । ଇରାକ, ଇରାନ ଓ ବେଲୁଚିସ୍ଥାନ ଅଞ୍ଚଳରୁ ଉତ୍ତର ପଶ୍ଚିମ ଗିରିପଥଦେଇ ସିଂହ ଭାରତକୁ ପ୍ରବେଶ କରିଥିବାର ଅନୁମାନ କରାଯାଏ । କିନ୍ତୁ ଅପରପକ୍ଷେରେ ବାଘ ଆସାମର ପାର୍ବତ୍ୟ ଅଞ୍ଚଳଦେଇ ଭାରତକୁ ଅନୁପ୍ରବେଶ କରିଛି । ଆର୍ଯ୍ୟମାନେ ପ୍ରଥମେ ଯେତେବେଳେ ଭାରତକୁ ଆସି ବସତି ସ୍ଥାପନ କଲେ, ସେତେବେଳକୁ ସିଂହ ଭାରତରେ ଅନୁପ୍ରବେଶ କରି ସାରିଥିଲା । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପଶ୍ଚିମରେ ସିନ୍ଧୁନଦୀଠାରୁ ପୂର୍ବରେ ବେଙ୍ଗଲ ପର୍ଯ୍ୟନ୍ତ ଏବଂ ଉତ୍ତରରେ ଗଙ୍ଗା ଓ ସିନ୍ଧୁନଦୀଠାରୁ ଦକ୍ଷିଣରେ ନର୍ମଦା ନଦୀ ପର୍ଯ୍ୟନ୍ତ ସମଗ୍ର ଉତ୍ତର ଭାରତ ଓ ମଧ୍ୟଭାରତରେ ସିଂହ ଦେଖିବାକୁ ମିଳୁଥିଲା । ଆବୁଲ ଫାଜଲଙ୍କ ପ୍ରଣୀତ ଆଇନ-ଇ-ଆକବରୀରୁ ଜଣାଯାଏ–ଜାହାଙ୍ଗୀର ଥରେ ମହାରାଜା ଆକବରଙ୍କ ସହିତ ଲାହୋର ଅଞ୍ଚଳକୁ ସିଂହ ଶିକାର କରିବାକୁ ଯାଇଥିଲେ । ବର୍ତ୍ତମାନ କିନ୍ତୁ ଭାରତରେ ସମୁଦାୟ ମାତ୍ର ଦୁଇ ଶହ ବା ତହିଁରୁ କମ୍ ସିଂହ ଗୁଜୁରାଟର 'ଶାସନଜିର୍' ଅଭୟାରଣ୍ୟରେ ଅଭୟାଶ୍ରିତ ହୋଇ ରହିଛନ୍ତି । ଯଦି ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜୁନାଗଡ଼ର ନବାବ, ତତ୍କାଳୀନ ଭାଇସରାୟ ଲର୍ଡ଼ କର୍ଜନଙ୍କ ଉପଦେଶ ଅନୁଯାୟୀ ଜିର୍ ଅରଣ୍ୟକୁ ଅଭୟାରଣ୍ୟରେ ପରିଣତ କରି ଆଦେଶନାମା ଜାରି କରି ନଥାନ୍ତେ, ତାହେଲେ ହୁଏତ ଆମ ଐତିହ୍ୟର ପ୍ରତୀକ ସିଂହ ସବୁଦିନପାଇଁ ଭାରତରୁ ଲୋପ ପାଇଯାଇଥାନ୍ତା ।

ଅନ୍ୟ ଏକ କଥା ଏଠାରେ ଲକ୍ଷ୍ୟ କରାଯାଇ ପାରେ । ନର୍ମଦା ନଦୀ ଟପି ଦାକ୍ଷିଣାତ୍ୟ ଅଞ୍ଚଳରେ କିମ୍ବା ବର୍ମା ବା ସିଂହଳରେ ସିଂହ ଥିବାର କୌଣସି

ପ୍ରମାଣ ମିଳିନାହିଁ । ଏଥିରୁ ଅନୁମାନ କରାଯାଏ ଯେ ଭାରତରେ ସିଂହର ଅନୁପ୍ରବେଶ ବାଘର ଅନୁପ୍ରବେଶ ପରେ ହିଁ ଘଟିଛି ।

## ଆକୃତି ଓ ରଙ୍ଗ :–

ବାଘ ତୁଳନାରେ ସିଂହର ଆକୃତିଅପେକ୍ଷାକୃତ ଛୋଟ । ଶରୀରର ରଙ୍ଗ ସାଧାସିଧା ଖଇରିଆ ବା ଧୂସର । ଦେହରେ ବାଘଭଳି ଲମ୍ବା ଲମ୍ବା ପଟି ନଥାଏ । ପୁରୁଷ ସିଂହର ବେକ ପାଖରେ ଲମ୍ବା କେଶର ଗୁଚ୍ଛ ଥାଏ । ଆଫ୍ରିକାର ସିଂହ ତୁଳନାରେ ଏସିଆର ସିଂହମାନଙ୍କର କେଶର ଗୁଚ୍ଛ ପରିମାଣରେ କମ୍ ।

ସିଂହମାନଙ୍କର ହାରାହାରି ଦୈର୍ଘ୍ୟ ୯ ଫୁଟରୁ କିଛି ଅଧିକ (୨୭୫ ସେ.ମି.) ସାଧାରଣତଃ ୭ ଫୁଟ ୧୦ ଇଞ୍ଚରୁ ଆରମ୍ଭ କରି ୧୦ ଫୁଟ ଲମ୍ବର ସିଂହ ଦେଖାଯାଇଥାନ୍ତି । ଏହା ଭିତରେ ସିଂହର ଲାଞ୍ଜର ଦୈର୍ଘ୍ୟ ମଧ୍ୟ ଅନ୍ତର୍ଭୁକ୍ତ । ଶରୀରର ଓଜନ ୧୮୦ କିଲୋଗ୍ରାମରୁ ୨୨୫ କିଲୋଗ୍ରାମ ଭିତରେ । କାନ୍ଧ ପର୍ଯ୍ୟନ୍ତ ଉଚ୍ଚତା ହାରାହାରି ୩ ଫୁଟ ୬ ଇଞ୍ଚ ।

## ପ୍ରାକୃତିକ ବାସସ୍ଥଳୀ :–

ପାଞ୍ଚ ଶହ ବର୍ଗମାଇଲ ପରିମିତ ଗୁଜୁରାଟର 'ଜିର୍' ଅରଣ୍ୟ ହିଁ ବର୍ତ୍ତମାନ ଭାରତୀୟ ସିଂହମାନଙ୍କର ଏକମାତ୍ର ପ୍ରାକୃତିକ ବାସସ୍ଥଳୀ । କେତେଗୁଡ଼ିଏ ମଧ୍ୟମ ଧରଣର ସାଗୁଆନ, ପଳାଶ ଓ ବରକୋଳି ଗଛ ଏବଂ ମଝିରେ ମଝିରେ ଛୋଟ ଛୋଟ ବାଉଁଶ ଓ କଣ୍ଟା ବୁଦାକୁ ନେଇ ଏହି ଜିର୍ ଅରଣ୍ୟ ଅପେକ୍ଷାକୃତ ଖୋଲା ଓ ସମତଳ । ବାଘଭଳି ସିଂହ ନିଘଞ୍ଚ ଓ ନିବିଡ଼ ଜଙ୍ଗଲ ଦରକାର କରେ ନାହିଁ । ଏହା ଖରା ଓ ଗରମ ଅଧିକ ସହ୍ୟ କରିପାରେ । ଏପରିକି ପଶ୍ଚିମଏସିଆ ଓ ପଶ୍ଚିମ ଭାରତର ମରୁଭୂମି ଓ ଅର୍ଦ୍ଧମରୁଭୂମି ଅଞ୍ଚଳରେ ମଧ୍ୟ

ସିଂହ ଅନୁପ୍ରବେଶ କରି ପାରିଛି, ଯେଉଁ ଅଞ୍ଚଳରେ କୌଣସିବାଘ ବଞ୍ଚିବା ଆଦୌ ସମ୍ଭବପର ନୁହେଁ ।

**ଆଚାର ବ୍ୟବହାର :–**

ଭାରତୀୟ ସିଂହ ଓ ଆଫ୍ରିକାର ସିଂହଙ୍କର ଆଚାର ବ୍ୟବହାରରେ ବିଶେଷ ପାର୍ଥକ୍ୟ ଦେଖାଯାଏ ନାହିଁ । ଏମାନେ ଦିନସାରା ଗଛ ଛାଇରେ ବିଶ୍ରାମ ନିଅନ୍ତି ଏବଂ ଠିକ୍ ମୁହଁସଞ୍ଜ ବେଳକୁ ଖାଦ୍ୟ ଅନ୍ୱେଷଣରେ ବାହାରିପଡ଼ନ୍ତି । ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରୁ ଜଣେ, (ଅନେକ କ୍ଷେତ୍ରରେ ସିଂହୀ) ଗୋଟିଏ ସୁବିଧା ଯାଗାରେ ଶୀକାର ଅପେକ୍ଷାରେ ଛକି କରି ବସେ ଏବଂ ଅନ୍ୟପଟୁ ସିଂହ ଶୀକାର ଜନ୍ତୁଟିକୁ ସେହି ଦିଗରେ ଘଉଡ଼ାଇ ଆଣେ । ବନ୍ୟଜନ୍ତୁଟି ସିଂହୀର ନିକଟବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ସିଂହୀ ତା ଉପରକୁ ଝାମ୍ପିପଡ଼େ । ଏହିପରି ସିଂହ ଶିକାର କରିଥାଏ । ଏହି କାରଣରୁ ସଞ୍ଜବେଳଠାରୁ ଆରମ୍ଭ କରି ଭୋର ହେବା ପର୍ଯ୍ୟନ୍ତ ଅର୍ଥାତ୍ ରାତିସାରା ଜଙ୍ଗଲରେ ଏମାନଙ୍କର ଗର୍ଜନ ଶୁଣାଯାଇଥାଏ ।

ବାଘଭଳି ସିଂହ ମଧ୍ୟ ଗାଈ, ଗୋରୁ, ହରିଣ, ସମ୍ବର ଇତ୍ୟାଦିର ମାଂସ ଖାଇଥାଏ । ଥରକରେ ଗୋଟିଏ ସିଂହ ଗୋଟିଏ ଗାଈକୁ ସମ୍ପୂର୍ଣ୍ଣରୂପେ ଖାଇ ଦେଇପାରେ । ତାପରେ ଦୁଇ ତିନିଦିନ ଖାଦ୍ୟ ନ ମିଳିଲେ ମଧ୍ୟ ଏହା ଚଳେଇ ନିଏ । ପଚାସଢ଼ା ଓ ନଷ୍ଟ ହୋଇ ଯାଇଥିବା ମାଂସକୁ ମଧ୍ୟ ସିଂହ ଆଗ୍ରହର ସହିତ ଖାଇଥାଏ । ଜିର୍ ଅରଣ୍ୟର ସିଂହମାନେ ଅଧିକାଂଶ ସମୟରେ ଗାଈଗୋରୁ ହିଁ ଶିକାର କରିଥାନ୍ତି । ବେଳ ଗଡ଼ିଆସିଲା ବେଳକୁ ସିଂହ ଯାଇ ନିକଟସ୍ଥ ଗାଁ ମୁଣ୍ଡରେ ଗୋଠରୁ ଫେରୁଥିବା ଗାଈମାନଙ୍କୁ ଜଗିକରି ବସିଥାଏ ଏବଂ ସୁବିଧା ଦେଖି ଗୋଟିଏ ଗାଈ କିମ୍ବା ବାଛୁରୀ ଉଠେଇ ନେଇଥାଏ ।

ବାଘ ଯେତେବେଳେ ତା ଶିକାର ନିକଟକୁ ଫେରେ ସେତେବେଳେ ଖୁବ୍ ଚୁପ୍‌ଚାପ୍ ଏବଂ ଲୁଚିଛପି ଆସିଥାଏ କିନ୍ତୁ ଭୟ ବା ବିପଦର ସାମାନ୍ୟତମ ସନ୍ଦେହର ଅବକାଶ ଥିଲେ ଫେରି ଯାଇଥାଏ; ମାତ୍ର ସିଂହର ଠିକ୍ ଓଲଟା କଥା । ବାଘଭଳି ସିଂହ ଏଡ଼େ ସତର୍କ ବା ଚାଲାକ ଚତୁର ନୁହେଁ । ତଥାପି ସେ ଖୁବ୍ ଦୁର୍ଦ୍ଧାନ୍ତ । ବିପଦକୁ ତାର ଖାତିର ନଥାଏ । ନିଜକୁ ସେ ଜଙ୍ଗଲର ରାଜା ବୋଲି ଭାବେ । ଅପରାହ୍ନ ନଇଁ ଆସିବା ସଙ୍ଗେ ସଙ୍ଗେ ଯେମିତି ଜଙ୍ଗଲରେ ଗଛଲତାର ଛାଇ ଲମ୍ବିବାକୁ ଆରମ୍ଭ କରେ ସେମିତି ସିଂହ ତାର ସମସ୍ତ ପରିବାର ଅର୍ଥାତ୍ ସ୍ତ୍ରୀ ପିଲାଛୁଆଙ୍କୁ ଧରି ଶିକାର ପାଖକୁ ଆସିଥାଏ । ଜିର ଅରଣ୍ୟରେ ଏପରି ଦେଖାଯାଇଛି, ମାତ୍ର ୧୫ ଫୁଟ ଦୂରରେ ମଣିଷର ଉପସ୍ଥିତି ଜାଣିଲେ ମଧ୍ୟ ସିଂହ ବିଚଳିତ ନ ହୋଇ ନିଜର ପିଲାଛୁଆଙ୍କ ସହିତ ଶିକାର ଖାଇବାରେ ଲାଗିଥାଏ । ସିଂହର ଏହି ବେଖାତିର ମନୋବୃତ୍ତି ହିଁ ଅନେକାଂଶରେ ସେମାନଙ୍କର ସଂଖ୍ୟା ଦ୍ରୁତଗତିରେ ହ୍ରାସ ପାଇଯିବା ପାଇଁ ଦାୟୀ ।

ବାଘପରି ସିଂହର ମଧ୍ୟ ଶ୍ରବଣେନ୍ଦ୍ରିୟ ଅନ୍ୟାନ୍ୟ ଇନ୍ଦ୍ରିୟଠାରୁ ଅଧିକ ଶକ୍ତିଶାଳୀ । କାନ ପଛକୁ ତାର ଆଖି ଦୁଇଟିର ସ୍ଥାନ । ଘ୍ରାଣଶକ୍ତି କାନ ଓ ଆଖି ତୁଳନାରେ ସେତେ ଉନ୍ନତ ନୁହେଁ; କିନ୍ତୁ ଏ ସମ୍ପର୍କରେ କୌଣସି ଯୁକ୍ତିଯୁକ୍ତ ଗବେଷଣା ଏ ପର୍ଯ୍ୟନ୍ତ ହୋଇନାହିଁ ।

ସିଂହ ଅନାୟାସରେ ଗଛ ଚଢ଼ିପାରେ ।

## ପାରିବାରିକ ଜୀବନ :–

ସିଂହମାନଙ୍କର କୌଣସି ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ଥିବାର ଜଣାଯାଏ ନାହିଁ । କିନ୍ତୁ ଜିର୍ ଅରଣ୍ୟରେ ସିଂହ ସାଧାରଣତଃ ଅକ୍ଟୋବର, ନଭେମ୍ବର ମାସରେ ସହବାସ କରିଥାଏ ଏବଂ ସିଂହୀ ଗର୍ଭଧାରଣ କରିବାର ସାଢ଼େ ତିନି ମାସରୁ ଚାରି ମାସ (୧୧୬ ଦିନ) ଭିତରେ ଛୁଆ ଜନ୍ମ କରିଥାଏ । ଥରକରେ

ପ୍ରାୟ ଦୁଇ, ତିନୋଟି ଛୁଆ ଜନ୍ମ ହୋଇଥାନ୍ତି । ବାଘ ଯେପରି ଛୁଆ ଜନ୍ମହେବା ସଙ୍ଗେ ସଙ୍ଗେ ବାଘୁଣୀକୁ ଛାଡ଼ି ଚାଲିଯାଏ, ସିଂହ ସେପରି କରି ନଥାଏ । ପୁରୁଷ ସିଂହ ତାର ପରିବାର ସହିତ ରହେ ଓ ଛୁଆମାନଙ୍କୁ ରକ୍ଷା କରିବାରେ ଓ ଖାଦ୍ୟ ସଂଗ୍ରହ କରିବାରେ ସାହାଯ୍ୟ କରେ । ଏଥିରୁ ଜଣାଯାଏ ଯେ ବାଘ ଅପେକ୍ଷା ସିଂହର ପାରିବାରିକ ଜୀବନ ଅଧିକ ଉନ୍ନତ ।

ଗୋଟିଏ ସିଂହ ଏକ ସମୟରେ ଦୁଇ ତିନୋଟି ସିଂହୀ ସହିତ ବୁଲିବାର ଦେଖାଯାଇଥାଏ । ଅଢ଼େଇ ବର୍ଷରୁ ତିନି ବର୍ଷର ହେଲାପରେ ହିଁ ସିଂହୀ ଗର୍ଭଧାରଣ କରିବାକୁ ସକ୍ଷମ ହୋଇପାରେ ଏବଂ ପ୍ରତି ଦେଢ଼ ବର୍ଷରୁ ଦୁଇ ବର୍ଷ ଅନ୍ତରରେ ଛୁଆ ଜନ୍ମ ହୋଇଥାନ୍ତି । ହାରାହାରି ସିଂହ ପଚିଶ ବର୍ଷରୁ ତିରିଶ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥାଏ ।

**ଶେଷକଥା :-**

ଅନେକ ସମୟରେ ସାଧାରଣ ଲୋକଙ୍କ ମନରେ ପ୍ରଶ୍ନ ଉଠିଥାଏ, ବାଘ ଓ ସିଂହ ମଧ୍ୟରେ ଅଧିକ ବଳବାନ କିଏ ? କିନ୍ତୁ କଥା ହେଲା, ଦୈନନ୍ଦିନ ଜୀବନରେ ସିଂହ ଓ ବାଘଙ୍କର ଲଢ଼ିବାର ଅବକାଶ ନଥାଏ । କାରଣ ବାଘ ନିଘଞ୍ଚ ଅରଣ୍ୟରେ ରହିଲାବେଳକୁ ସିଂହ ଅପେକ୍ଷାକୃତ ଖୋଲା ଓ ସମତଳ ଅଞ୍ଚଳର ଜଙ୍ଗଲରେ ବାସ କରିଥାଏ । 'ଅଲୱାର'ର ମହାରାଜା ପ୍ରାୟ ତିନି ଚାରିଥର ସିଂହ ଓ ବାଘ ମଧ୍ୟରେ ଲଢ଼େଇର ଆୟୋଜନ କରିଥିଲେ; କିନ୍ତୁ ପ୍ରତିଥର ବାଘ ଯୁଦ୍ଧରୁ ଓହରି ପଳାୟନ କରିଥିଲା । ଏହାର କାରଣ ହେଲା ଯଦିଓ ସିଂହ ଓ ବାଘଙ୍କର ହାରାହାରି ଓଜନ ସମାନ । ତଥାପି ଯୁଦ୍ଧ ହେଲେ ସିଂହର ଜିତିବାର ସମ୍ଭାବନା ବେଶୀ । କାରଣ ଉଭୟେ ପଶୁ ଶିକାର କଲାବେଳେ ପ୍ରଥମେ ଶତ୍ରୁର ବେକ ଉପରେ ହିଁ ଆକ୍ରମଣ କରିଥାନ୍ତି; କିନ୍ତୁ ସିଂହର ବେକରେ ଗୋଛାଏ ଲମ୍ବ ଲମ୍ବ କେଶର ଥିବାରୁ, ବାଘର ଆକ୍ରମଣ ସେତେଦୂର ଫଳପ୍ରଦ ହୋଇ ନଥାଏ, ଯେତେଦୂର ସମ୍ଭବ ସିଂହର ଆକ୍ରମଣ ବାଘ ଉପରେ ଫଳପ୍ରଦ ହୁଏ ।

ଦ୍ୱିତୀୟ କଥା ହେଲା– ବାଘ ଯଦି ଆହତ ହୋଇ ନଥାଏ ବା 'ମଣିଷଖିଆ' ବାଘ ହୋଇ ନଥାଏ ଏବଂ ବାଘୁଣୀ ଯଦି ତାର ଛୁଆଙ୍କୁ ଜଗି ନଥାଏ, ତାହେଲେ ସାଧାରଣତଃ ବାଘ ବା ବାଘୁଣୀ ମଣିଷକୁ ଆକ୍ରମଣ କରି ନଥାନ୍ତି । ମଣିଷକୁ ଦେଖିଲେ ଅନେକ କ୍ଷେତ୍ରରେ ବାଘ ଆଡୁଆଳକୁ ଅପସରି ଯାଇଥାଏ । କିନ୍ତୁ ସିଂହ ମଣିଷକୁ ଆଦୌ ଡ଼ରେ ନାହିଁ । ଦୈନନ୍ଦିନ କ୍ଷୁଧା ନିବାରଣପାଇଁ ସିଂହ ବନ୍ୟଜନ୍ତୁ ବା ଗୃହପାଳିତ ପଶୁଙ୍କୁ ଶିକାର କରିଥାଏ; କିନ୍ତୁ କୌଣସି କାରଣରୁ ସିଂହକୁ ଯଦି ଶିକାର ଅଭାବ ହୁଏ, ତାହାହେଲେ ସେ ସିଧା ମଣିଷକୁ ଆକ୍ରମଣ କରିବାକୁ ପଛାଏ ନାହିଁ । ଉତ୍ତର ପ୍ରଦେଶର ଚନ୍ଦ୍ରପ୍ରଭା ଅରଣ୍ୟରେ ଗୁଜୁରାଟର ଜିର୍ ଅରଣ୍ୟରୁ ଆଣି ଛାଡ଼ିଥିବା ସିଂହକୁ ଲୋକମାନେ ବିଷ ଦେଇ ମାରିଦେବା; ଏହା ହେଲା ପ୍ରଧାନ କାରଣ ।

ସିଂହର ଏହି ଦୁର୍ଦ୍ଧାନ୍ତ, ବେପରୁଆ ମନୋବୃତ୍ତି, ଅଦମନୀୟ ବଳ ଓ ରାଜକୀୟ ଚେହେରାପାଇଁ ତାକୁ ଯଥାର୍ଥରେ ପଶୁରାଜ ସିଂହ ଆଖ୍ୟା ଦିଆଯାଇଛି । ଇଂଲଣ୍ଡ, ଫ୍ରାନ୍ସ ଓ ଜର୍ମାନୀରୁ ମିଳିଥିବା ଫସିଲରୁ ପ୍ରମାଣ ମିଳେ ଯେ ପ୍ରାଗ୍ ଐତିହାସିକ ସମୟରେ ମଧ୍ୟ ୟୁରୋପୀୟ ଓ ଗ୍ରୀସ ଅଞ୍ଚଳରେ ଯଥେଷ୍ଟ ସିଂହ ଥିଲେ କିନ୍ତୁ ବର୍ତ୍ତମାନ ସେହିସବୁ ଅଞ୍ଚଳରୁ ସିଂହ ସମ୍ପୂର୍ଣ୍ଣରୂପେ ଲୋପପାଇ ଯାଇଛନ୍ତି । ଯଦି ଉପଯୁକ୍ତ ଯତ୍ନ ନିଆ ନଯାଏ, ତାହେଲେ ଆମ ଭାରତରେ ବର୍ତ୍ତମାନ ଯେଉଁ ଦୁଇ ଶହ ସିଂହ ଜିର୍‌ର ଅଭୟାରଣ୍ୟରେ ରହିଛନ୍ତି ସେମାନେ ମଧ୍ୟ ଅଚିରେ ଲୋପ ପାଇଯିବେ ଏବଂ ଆମ ବଂଶଧରମାନଙ୍କ ପାଇଁ ଭବିଷ୍ୟତରେ ଏହି ସୁନ୍ଦର ଜନ୍ତୁଟି କେବଳ ଇତିହାସ ଓ କାହାଣୀ ବହିର ବିଷୟବସ୍ତୁ ହୋଇ ରହିଯିବ ।





# ଭାଲୁ

*"ବାଃ, ବାଃ କେମିତି ମଜା*
*ଭାଲୁନାଚ କରେ ବଜାଇ ବାଜା ।"*

ନାଲି ନେଲି ଜାମା ପିନ୍ଧି, ପାଦରେ ଘୁଙ୍ଗର ଓ ବେକରେ ଘଣ୍ଟି ବାନ୍ଧି, ଭାଲୁ ନାଚ କରିବାର ତୁମେମାନେ ଗାଁ ମାନଙ୍କରେ ଦେଖିଥିବ । ଆଗେ ଅବଶ୍ୟ ଭାଲୁ ମାଲିକମାନେ ବାରମ୍ବାର ଗାଁକୁ ଯାଉଥିଲେ ।୧୯୬୦ ମସିହା ପର୍ଯ୍ୟନ୍ତ ଭାଲୁ ନାଚ, ମାଙ୍କଡ଼ ନାଚ ଗାଁ ଗଣ୍ଡାର ପ୍ରଧାନ ଆକର୍ଷଣ ଥିଲା । ଜଣେ ଲୋକ ଡ୍ରମ ବଜାଏ ଓ ଭାଲୁ ବାଜା ସହିତ ତାଳ ପକେଇ ନାଚେ । ପରେ ପଇସା ମାଗିବା ପାଇଁ ଭାଲୁ ଦେଖଣାହାରୀଙ୍କ ନିକଟରେ ହାତ ପାପୁଲି ପତେଇ ଦିଏ । କେତେକ କୁହନ୍ତି, ଭାଲୁର ସଂଗୀତ ପ୍ରତି ଆକର୍ଷଣ ଥିବାରୁ ତାକୁ ନାଚ ଆପେ ଆପେ ମାଲୁମ ହୋଇଯାଏ । ବ୍ରିଟେନ୍ ଓ ଆମେରିକାର ଚିଡ଼ିଆଖାନାରେ କରାଯାଇଥିବା ବିଭିନ୍ନ ପରୀକ୍ଷାରୁ ଜଣାଯାଇଛି ଯେ, ନିଶାଚର ଜୀବଗୁଡ଼ିକ ଦିବାଚର ଅପେକ୍ଷା ଏବଂ ମାଈ ଗୁଡ଼ିକ ଅଣିରା ଜୀବ ଅପେକ୍ଷା ଅଧିକ ସଂଗୀତପ୍ରିୟ । ଭାଲୁ ଏକ ନିଶାଚର ଜୀବ ହୋଇଥିବାରୁ ସଂଗୀତ ପ୍ରତି ହୁଏତ ତାର ଆକର୍ଷଣ ଥାଇପାରେ ।

ଗାଡ଼ଭାଲୁ ଭାରତର ବଣ ଜଙ୍ଗଲରେ ସର୍ବତ୍ର ଦେଖିବାକୁ ମିଳେ । ଭାଲୁ ଦେଖିବାକୁ ଅପରିଷ୍କାର, ନିର୍ବୋଧ ଜୀବଟିଏ ଭଳି ମନେହୁଏ । ଗୋଜିଆ ହୋଇ ବଡ଼ ମୁହଁଟିଏ । ଦୁଇଟି ଛୋଟ ଛୋଟ ଆଖି ଓ ଗୋଲ ଗୋଲ କାନ । ଦେହରେ କଳା ବାଳର ଏକ ମୋଟା ଆସ୍ତରଣ ଯୋଗୁଁ ଭାଲୁର ଶରୀର ଆକୃତି ଅପେକ୍ଷା ଯଥେଷ୍ଟ ବଡ଼ ଜଣାଯାଏ । ଏଥିପାଇଁ ଅନେକ ଶିକାରୀ ଭାଲୁକୁ ସହଜରେ ମାରିପାରନ୍ତି ନାହିଁ । କାରଣ ପ୍ରାୟତଃ ବନ୍ଧୁକଗୁଳି ଭାଲୁର ବାଳ ଭେଦ ନକରିପାରି ବାହାରିଯାଏ, କିମ୍ବା ତାର ଦେହକୁ ସାମାନ୍ୟ ଆଞ୍ଚୁଡ଼ି କରି ଚାଲିଯାଏ । ଓଦା ମାଟିରେ ଭାଲୁର ପାଦଚିହ୍ନ ମଣିଷର ପାଦଚିହ୍ନପରି ଜଣାଯାଏ । ଭାଲୁରପାଦ ଆଙ୍ଗୁଳିରେ ତୀକ୍ଷ୍ଣ ନଖମାନ ଥାଏ । ଏହାଦ୍ୱାରା ସେ ମଣିଷକୁ ରାମ୍ପୁଡ଼ି ଦିଏ । ଶରୀରଟି ଲମ୍ବା ଲମ୍ବା ଘନ କେଶ ଦ୍ୱାରା ଆବୃତ ଥାଏ । ମଲା ଭାଲୁର ଦେହରୁ ଚମଡ଼ା ଉତାରି ଦେଲେ, ତାର ଶରୀର ଏକ ମାଂସପେଶୀ ବହୁଳ, ସବଳ ମଣିଷର ଶରୀର ପରି ପ୍ରତୀୟମାନ ହୁଏ ।

ତୁମେମାନେ ସବୁ 'ଭାଲୁ ଓ ଦୁଇ ସଙ୍ଗାତ କାହାଣୀ ଶୁଣିଥିବ । ''ରାମ ଓ ଶ୍ୟାମ ଦୁଇ ସଙ୍ଗାତ ଦିନେ ସାଙ୍ଗ ହୋଇ ବଣକୁ ଯାଇଥିଲେ । ବଣରେ କୋଳି ଗୋଟାଉଥିବା ବେଳେ ଭାଲୁଟିଏ ଆସିଲା । ରାମ ପ୍ରାଣ ବିକଳରେ ଦଉଡ଼ିଯାଇ ଗଛ ଉପରେ ଚଢ଼ିଗଲା । ଶ୍ୟାମକୁ ଗଛ ଚଢ଼ା ଆସେ ନାହିଁ । ତାର ମନ ଭୟ ଓ ଆଶଙ୍କାରେ ଭାଙ୍ଗି ପଡ଼ିଲା । ହଠାତ୍ ତାକୁ ବୁଦ୍ଧିଟିଏ ଜୁଟିଗଲା । ସେ ତଳେ ଚୁପ୍‌ଚାପ ଶୋଇପଡ଼ିଲା । ନିଃଶ୍ୱାସ କିଛିକ୍ଷଣ ବନ୍ଦ କରିଦେଇ ମଲା ମଣିଷର ଅଭିନୟ କଲା । ଭାଲୁ ମଲା ମଣିଷ ଖାଏ ନାହିଁ । ତେଣୁ ସେ ଶ୍ୟାମର ଶରୀରକୁ ଘୁଂଘିଲା ପରେ, ମଲା ମଣିଷ ଭାବି ଛାଡ଼ି ଚାଲିଗଲା । ଭାଲୁ ଚାଲିଗଲା ପରେ ରାମ, ଗଛରୁ ଓହ୍ଲାଇ ତଳକୁ ଆସିଲା । ଶ୍ୟାମ କିନ୍ତୁ ଆଉ ରାମର ସାଙ୍ଗ ହେଲା ନାହିଁ । କହିଲା; ଯେ ବିପଦ ବେଳେ ସାଙ୍ଗକୁ ଏକୁଟିଆ ଛାଡ଼ି ଚାଲିଯାଏ, ସେ ପ୍ରକୃତ ସାଙ୍ଗ ନୁହେଁ ।

ଏହି କାହାଣୀର ପ୍ରଥମ କଥାଟି ହେଲା, ରାମ ଗଛରେ ଚଢ଼ିଯିବାରୁ ଭାଲୁ ଆକ୍ରମଣରୁ ରକ୍ଷା ପାଇଲା । ଏଥିରୁ ଜଣେ ଅନୁମାନ କରିବ ଯେ ଭାଲୁକୁ ଗଛ ଚଢ଼ା ଆସେ ନାହିଁ । କିନ୍ତୁ ପ୍ରକୃତରେ ଭାଲୁ ବେଶ୍ ଗଛ ଚଢ଼ିପାରେ । କୋଳି ତୋଳିବା ପାଇଁ ଭାଲୁ ଗଛରେ ଚଢ଼େ ଓ ନିଜ ପାଦରେ ଡାଳଗୁଡ଼ିକୁ ହଲାଇ କୋଳି ଝଡ଼ାଏ । ବସନ୍ତ ଋତୁର ଶେଷ ଭାଗରେ ଯେତେବେଳେ ମହୁଫେଣାଗୁଡ଼ିକ ମହୁରେ ଭରପୁର ହୋଇଥାଏ, ସେ ସମୟରେ ଭାଲୁ ପ୍ରଥମେ ଗଛରେ ଚଢ଼ି ମହୁ ଫେଣାକୁ ଭାଙ୍ଗି ତଳେ ପକେଇ ଦିଏ । ପରେ ତଳକୁ ଆସି ମହୁ ଖାଏ । ଭାଲୁ ସିନା ସହଜରେ ଗଛ ଚଢ଼ିଯାଏ, କିନ୍ତୁ ଓହ୍ଲାଇଲା ବେଳକୁ ହଇରାଣ ହୁଏ । ସେଥିପାଇଁ ଗଛକୁ ଜାବୁଡ଼ି ଧରି ସିଧାସଳଖ ଖସିଆସେ ଓ ତଳେ କଚାଡ଼ି ହୋଇପଡ଼େ ।

ବିଭିନ୍ନ ଜାତିର ଫଳ ଖାଇବାରେ ଭାଲୁର ଆଗ୍ରହ । ବରକୋଳି, ଜାମୁକୋଳିତାର ଅତି ପ୍ରୀୟ ଫଳ । ବର୍ଷାଦିନେ ଜାମୁକୋଳି ପାଚି ତଳେ ଝଡ଼ି ପଡ଼ିଲେ, ଭାଲୁମାନଙ୍କର ମଜାଦେଖ । ଫଗୁଣ, ଚୈତ୍ର ମାସରେ ଯେତେବେଳେ ମଧୁର, ସୁଗନ୍ଧ ଯୁକ୍ତ ମହୁଲ ଫୁଲ ତଳେ ଝଡ଼ିପଡ଼ିଥାଏ ସେତେବେଳେ ସଞ୍ଜ ପରେ ଦଳଦଳ ଭାଲୁଙ୍କୁ ମହୁଲ ଗଛ ମୂଳେ ଦେଖିବାକୁ ମିଳେ । ଖରାଦିନେ ସଂଧ୍ୟାପରେ ରାୟଗଡ଼ାରୁ କୋରାପୁଟ ଯିବା ବାଟରେ, ଲକ୍ଷ୍ମୀପୁର ଘାଟିତଳେ, ରାସ୍ତାକଡ଼ ମହୁଲ ଗଛ ମୂଳରେ ଭାଲୁ ଦେଖିବାକୁମିଳନ୍ତି । ଜିପ୍‌ର ଲାଇଟ୍ ପଡ଼ିଲେ ସେମାନେ ଟିକିଏ ଦୂରେଇ ଯାଆନ୍ତି । ଖରାଦିନେ ଜଙ୍ଗଲରେ ଝଡ଼ି ପଡ଼ିଥିବା ବଣୁଆ ଖଟା ଆମ୍ବ ମଧ ସେମାନେ ଆନନ୍ଦରେ ଖାଆନ୍ତି । କଷାଆମ୍ବ ଅପେକ୍ଷା ପାଚିଲା ଆମ୍ବ ଭାଲୁର ଅତି ପ୍ରୀୟ ଖାଦ୍ୟ । ପାଚିଲା ପଣସ ମଧ୍ୟ ଭାଲୁଖାଏ ।

ଉପର କାହାଣୀରେ ରାମ ରକ୍ଷା ପାଇଯିବାର ଅସଲ କାରଣ ହେଲା; ଭାଲୁ ଖୁବ୍ କମ୍ ଦେଖିପାରେ ଓ କମ୍ ଶୁଣିପାରେ । ସେହିପରି ଖୁବ୍ କମ୍ ଦୂରରୁ କେବଳ ବାସ୍ନା ବାରିପାରେ । ଗଛରେ ଚଢ଼ିଯିବାରୁ ରାମର ଉପସ୍ଥିତି ଭାଲୁ ଆଦୌ ଜାଣି ପାରିଲାନାହିଁ ।

ଧଳାଉଈ ଭାଲୁର ସୁମିଷ୍ଟ ଖାଦ୍ୟ । ଉଈ ହୁଙ୍କା ଭିତରେ ନିଜର ଗୋଜିଆ ମୁହଁଟିମାନ ଗଳାଇ ସେମାନେ ଉଈମାନଙ୍କୁ ଆନନ୍ଦରେ ଖାଆନ୍ତି । ବର୍ଷାଦିନେ ଛୋଟ ଛୋଟ କୀଟପତଙ୍ଗ ମଧ ସେମାନଙ୍କର ଖାଦ୍ୟ । ଭାଲୁ ଯେ କେବଳ ଶାକାହାରୀ କିମ୍ବା ଉଈ ଓ ଛୋଟ ଛୋଟ କୀଟପତଙ୍ଗ ଖାଏ, ଏକଥା ମଧ ସଂପୂର୍ଣ୍ଣ ଠିକ୍ ନୁହେଁ । ବେଳେ ବେଳେ ଆହାର ପାଇଁ ଭାଲୁ ଅନ୍ୟ ଜନ୍ତୁଙ୍କୁ ଆକ୍ରମଣ କରି ମାରିପକାଏ । ବାଘ ବା ଚିତାବାଘ ଅଧାଖାଇ ଛାଡ଼ିଯାଇଥିବା ମଡ଼କୁ ମଧ ଭାଲୁ ଖାଇବାର ଦେଖାଯାଇଛି । କିନ୍ତୁ ପ୍ରକୃତି ବା ଅଭ୍ୟାସ ବଶତଃ ଭାଲୁ ବିଶେଷତଃ ଫଳ ମୂଳ ଖାଇବାକୁ ଭଲପାଏ । ଏହି କାରଣରୁ ପୂର୍ବ ବର୍ଣ୍ଣିତ କାହାଣୀରେ କୁହାଯାଇ ପାରିଥାଏ ଯେ, ଭାଲୁ ମଲା ମଣିଷ ଖାଏ ନାହିଁ ।

ବଣ ନିକଟରେ ବା ଜଙ୍ଗଲ ଭିତରେ ଗାଁ ଗଣ୍ଡା ଓ ଜନବସତି ଥିଲେ, ମଣିଷ ସଂପର୍କରେ ଆସି ଭାଲୁର ଆଚାର ବ୍ୟବହାରରେ ମଧ କେତେକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ମଣିଷଠାରୁ ସେମାନେ ବିଶେଷ ସତର୍କ ରହନ୍ତି ଏବଂ କେବଳ ରାତି ହେଲେ ବାହାରକୁ ବାହାରନ୍ତି । ଗାଁ ପାଖ ଖଜୁରୀ ଗଛରେ ତାଡ଼ି ସଂଗ୍ରହ ପାଇଁ ମାଠିଆ ବନ୍ଧା ହୋଇଥିଲେ, ଭାଲୁ ଗଛରେ ଚଢ଼ି ଖଜୁରୀ ରସ ପିଇଦିଏ । ଶୀତଦିନରେ ଆଖୁ କ୍ଷେତ୍ରରେ ପଶି ଆଖୁ ଭାଙ୍ଗି ଖାଏ । ହିମାଳୟରେ ଥିବା ଭାଲୁମାନେ ବିଶେଷକରି ଗାଁ ପାଖ ଆଖରେ ରୁହନ୍ତି । ସେମାନେ ବେଳେ ବେଳେ କୁକୁଡ଼ା ଓ ଛେଳିଛୁଆ ମଧ ଟେକି ନିଅନ୍ତି ।

ଗାଡ଼ ଭାଲୁ ଘଞ୍ଚ ଜଙ୍ଗଲିଆ ଯାଗାରେ, ପାହାଡ଼ ଗୁମ୍ଫା ଓ ପଥର ଖୋଲ ମାନଙ୍କରେ ରହନ୍ତି । ଯେଉଁଠି ସେମାନଙ୍କୁ ଖରା ଓ ବର୍ଷାରୁ ଆଶ୍ରୟ ମିଳିପାରିବ । ମୁହଁସଂଜ ହୋଇଗଲା ପରେ ସେମାନେ ବାହାରନ୍ତି ଓ ସାରା ରାତି ବୁଲିବୁଲି ଖାଦ୍ୟ ସଂଗ୍ରହ କରନ୍ତି । ଦିନର ଅଧିକାଂଶ ସମୟ ଭାଲୁର ଶୋଇବାରେ ଯାଏ । ନିଜେ ଖୋଳିଥିବା ଅଗଭୀର ଗାତରେ, ନଚେତ୍ ଘାସ ପଡ଼ିଆରେ, ଗଛ ଛାଇରେ ବା ପାହାଡ଼ ଗୁମ୍ଫାରେ ଶୋଇ ଶୋଇ ଭାଲୁ ଘୁଙ୍ଗୁଡ଼ି ମାରେ । ଶୀତଦିନେ ସେମାନେ

ଖୋଲା ଘାସ ପଡ଼ିଆରେ ଗଛ ଛାଇରେ ଶୁଅନ୍ତି । କିନ୍ତୁ ଖରା ଓ ବର୍ଷାରେ ପଥର ଖୋଲରେ ବା ପାହାଡ଼ ଗୁମ୍ଫାରେ ଆଶ୍ରୟ ନିଅନ୍ତି । ଖରାଦିନେ ଭାଲୁକୁ ବେଶୀ ଶୋଷ କରେ । ତେଣୁ ସେ ପାଣି ଖୋଜିବାକୁ ବହୁ ଦୂରକୁ ଚାଲିଯାଏ ଓ ଶୁଖି ଯାଇଥିବା ନାଳ ବା ଝରଣାର ଶଯ୍ୟାକୁ ଖୋଳି ପାଣି ସଂଗ୍ରହ କରେ ।

ଜଙ୍ଗଲରେ ଭାଲୁହିଁ ଏକମାତ୍ର ଜୀବ, ଯାହାର ଆଚରଣ କ'ଣ ହେବ, ତାହା ଆଗରୁ ଅନୁମାନ କରାଯାଇପାରିବ ନାହିଁ । ଅନ୍ୟ ଜୀବଜନ୍ତୁଙ୍କ ପରି ଭାଲୁବି ମଣିଷକୁ ଆଡ଼େଇଯାଏ । କିନ୍ତୁ ବିନା କ୍ରୋଧ ଓ ଉତ୍ତେଜନାରେ ମଧ ଭାଲୁ ମଣିଷକୁ ଆକ୍ରମଣ କରିଥାଏ । ଏହା ଭାଲୁର ସାହସିକତାର ପରିଚୟ ନୁହେଁ ବରଂ ଅତ୍ୟଧିକ ଭୟ ଓ ପଳାୟନ ଚେଷ୍ଟାରେ ତାର ଏ ଆକ୍ରମଣ । ଆଗରୁ କୁହାଯାଇଛି, ଭାଲୁର ଶ୍ରବଣ ଶକ୍ତି ଓ ଦୃଷ୍ଟି ଶକ୍ତି ଖୁବ୍ କମ୍ । ଅତି ନିକଟରୁହିଁ, ଖାଦ୍ୟ ପଦାର୍ଥର ବାସ୍ନାବାରି ସେ ଜାଣିପାରେ । ତେଣୁ ଖୁବ୍ ପାଖାପାଖି ପହଞ୍ଚି ଗଲା ପର୍ଯ୍ୟନ୍ତ ସେ ମଣିଷର ବାସ୍ନା ବାରିପାରେ ନାହିଁ । ମଣିଷ ଯଦି ଅସତର୍କ ଭାବରେ ଭାଲୁର ସାମ୍ନାସାମ୍ନି ହାବୁଡ଼ିଯାଏ, ତେବେ ଭାଲୁଚମକି ପଡ଼ି ଆକ୍ରମଣ କରିଥାଏ । ଉପସ୍ଥିତ ବୁଦ୍ଧି ମଧ ଭାଲୁର ବହୁତ କମ୍ । ସାମ୍ନାର ମଣିଷକୁ ଆକ୍ରମଣ କରି ତଳେ ପକାଇ ଦେବାହିଁ, ତାପକ୍ଷେ ପଳାୟନର ଶ୍ରେଷ୍ଠ ଉପାୟ ବୋଲି ସେ ଧରିନିଏ । ମହୁଲ ଫୁଲ ଝଡୁଥିବା ସମୟରେ ମହୁଲ ଗଛ ମୂଳରେ କାହାକୁ ପାଇଲେ, ଭାଲୁ ଆକ୍ରମଣ କରିବାକୁ ପଛାଏ ନାହିଁ । ଥରେ ସମ୍ବଲପୁର 'ବୃକ୍ସ ହିଲ୍'ରେ ଅବସ୍ଥିତ ବନବିଭାଗ ଡାକବଙ୍ଗଳା ବାରଣ୍ଡାରେ ବସିଥିବା ଜଣେକ ଫରେଷ୍ଟ ଅଫିସରଙ୍କୁ ଭାଲୁ ପଛପଟୁ ଆକ୍ରମଣ କରିଥିଲା । ଆକ୍ରମଣ ବେଳେ ସେ ସାଧାରଣତଃ ମଣିଷକୁ ଜାବୁଡ଼ି ଧରି ତାର ମୁହଁ ଓ ଆଖିକୁ ଖଣ୍ଡିଆ ଖାବରା ତଥା ବିକୃତ କରିପକାଏ । ରାଗରେ ଭାଲୁ କାମୁଡ଼ି ପକାଇବାର ଦୃଷ୍ଟାନ୍ତ ମଧ ଅଛି । ଭାଲୁର ଦୃଢ଼ ଆଲିଙ୍ଗନରେ ବେଳେବେଳେ ମଣିଷର ମୃତ୍ୟୁ ଘଟିଥାଏ ।

ଭାଲୁକୁ ମୋଟା ବୁଦ୍ଧିଆ ଆଖ୍ୟା ଦିଆଯାଇଛି । ଶତ୍ରୁର ଉପସ୍ଥିତି ସେ ସହଜରେ କଳନା କରିପାରେ ନାହିଁ । ଏକାଠି ବୁଲୁଥିବା ବେଳେ, ଦଳ ଭିତରୁ ଜଣେ ଆକ୍ରମଣର ଶିକାର ହେଲେ ବା ଖଣ୍ଡିଆ ଖାବରା ହେଲେ, ସେ ତାର ରାଗ ଅନ୍ୟ ଭାଲୁଙ୍କ ଉପରେ ଶୁଝେଇଥାଏ । ନିଜ ନିଜ ଭିତରେ ଝଗଡ଼ା ସେମାନଙ୍କର ଖୁବ୍ ଜୋର୍‌ଦାର ହୁଏ ।

ଭାଲୁ ବଦ୍‌ରାଗୀ ବା କ୍ଷଣକୋପି ହେଲେ ମଧ୍ୟ, ନିଜ ଛୁଆଙ୍କ ପ୍ରତି ସେ ବେଶ୍ ସ୍ନେହଶୀଳ । ମାଈ ଭାଲୁ ଥରକେ ସାଧାରଣତଃ ଦୁଇଟି ଛୁଆ ଦିଏ । ଶୀତଦିନେ ଛୁଆଗୁଡ଼ିକ ଜନ୍ମ ହୁଅନ୍ତି ଓ ମା' ସହିତ ଦୁଇବର୍ଷ ପର୍ଯ୍ୟନ୍ତ ରହନ୍ତି । ମା'ର ବେକ ପଛପଟେ ଥିବା ବାଳକୁ ଧରି ଛୁଆମାନେ ଓହଳିଥାନ୍ତି । ଛୁଆ ପାଖରେ ଥିଲାବେଳେ ମା' ଭାଲୁ ଅଳ୍ପକେ ଉତ୍ତେଜିତ ହୋଇ ଆକ୍ରମଣ କରେ । ଏକଲା ଥିଲାବେଳେ ଭାଲୁ ଖଣ୍ଡିଆ ଖାବରା ହେଲେ, ମଣିଷପରି ଚିତ୍କାର କରି କାନ୍ଦେ ଓ ସାରା ଜଙ୍ଗଲକୁ ତାର ବେଦନା ଜଣେଇ ଦିଏ । ମଣିଷ ପରି ପଛ ଦୁଇ ଗୋଡ଼ରେ ଛିଡ଼ା ହୋଇ ଭାଲୁ ଚାଲି ପାରେ ।

ଗାଡ଼ଭାଲୁ ଶ୍ରୀଲଙ୍କାରେ ମଧ୍ୟ ଦେଖାଯାନ୍ତି । କିନ୍ତୁ ସେମାନେ ଆକୃତିରେ ଆମ ଦେଶର ଭାଲୁଙ୍କ ଅପେକ୍ଷା ଛୋଟ । ଚେହେରାରୁ ଯଦିଓ ଜଣାପଡ଼େ ନାହିଁ, ତଥାପି ଫସିଲ୍ ପରୀକ୍ଷାରୁ ଜଣାପଡ଼ିଛିଯେ; ଭାଲୁ ଓ କୁକୁରଙ୍କର ପୂର୍ବପୁରୁଷମାନେ ଏକ ଜାତୀୟଜୀବ ଅଟନ୍ତି । କୁକୁର ପରି ସେମାନେ ଚାଲାକ୍ ନୁହନ୍ତି । ତେବେ ଦେଖାଯାଇଛିଯେ, ଭାଲୁ ଛୁଆ ମଧ୍ୟ କୁକୁର ପରି ପୋଷାମାନେ । ଉପଯୁକ୍ତ ଶିକ୍ଷାଦେଲେ, ସେମାନେ ବିଭିନ୍ନ କୌଶଳ ଦେଖାନ୍ତି । ସର୍କସରେ ଭାଲୁ ସାଇକେଲ୍ ଚଳାଏ ଓ ରିକ୍‌ସା ଟାଣେ ।

ଗାଡ଼ ଭାଲୁ ସାଧାରଣତଃ ଚାଳିଶ ବର୍ଷ ବଞ୍ଚେ ।





# ବଳିଆ କୁକୁର

୧୯୭୯ ମସିହା ମାର୍ଚ୍ଚ ମାସ । ଶିମିଳିପାଳ ଅଭୟାରଣ୍ୟ ସ୍ଥିତ "ଚହଲା" ଡାକବଙ୍ଗଳାରେ ତଥାପି ଶୀତ ଖୁନ୍ଦି ହୋଇ ରହିଥାଏ । ବନ୍ୟଜନ୍ତୁ ସମ୍ପର୍କରେ ତାଲିମ୍ ନେବା ଅବସରରେ ଆମେ ସେହି ଡାକବଙ୍ଗଳାରେ ରହିଥାଉ । ବ୍ୟାଘ୍ର ସଂରକ୍ଷଣ ଯୋଜନାର ତତ୍କାଳୀନ ନିର୍ଦ୍ଦେଶକ ୰ ସରୋଜରାଜ ଚୌଧୁରୀ ଏହି ତାଲିମ ଶିବିର ପରିଚାଳନା ଦାୟିତ୍ୱରେ ଥାଆନ୍ତି ।

ଶିମିଳିପାଳ ଜଙ୍ଗଲରେ ହାତୀମାନଙ୍କର ସଂଖ୍ୟା ଯଥେଷ୍ଟ ଅଧିକ । ଆଗରୁ ସେମାନେ ଦଳବଦ୍ଧ ହୋଇ ରାତିରେ ଡାକବଙ୍ଗଳା ନିକଟକୁ ଚାଲି ଆସୁଥିଲେ ଓ ସାମ୍ନାରେ ଯାହାପଡ଼ିଲା ଭାଙ୍ଗିରୁଜି ଦେଉଥିଲେ । ସେହି କାରଣରୁ ଡାକବଙ୍ଗଳା ଚାରିପଟେ ବିରାଟ ପରିଖାମାନ ଖୋଳାଯାଇଛି । ଯିବା ଆସିବା ପାଇଁ ପକାଯାଇଥିବା ପଟା ପୋଲଟିକୁ ରାତିରେ ଭିତରପଟକୁ ଉଠେଇ

ନିଆଯାଏ । ଦିନେ ସକାଳୁ ସକାଳୁ ଆମେ ଦୁଇତିନି ଜଣ ଫରେଷ୍ଟ ଅଫିସର ଡାକବଙ୍ଗଳା ବାହାରେ ବୁଲୁଥିଲୁ । ସକାଳର ସେହି ଜାଙ୍ଗୁଲୁ ଜାଙ୍ଗୁଲୁ ଆଲୁଅରେ ପରିଖା ଆରପଟେ ତିନି, ଚାରୋଟି କୁକୁର ପରି ଜୀବ ଗୋଟିଏ କୁଟ୍ରା ପଛରେ ଗୋଡାଉଥିବାର ଦୃଶ୍ୟ ଆମର ଦୃଷ୍ଟି ଆକର୍ଷଣ କଲା । ପ୍ରାୟ ଦୁଇ ତିନିମିନିଟ୍ ଭିତରେ ସେମାନେ କୁଟ୍ରାଟିକୁ କାବୁକରି ମାରିପକାଇଲେ । ଆମର ପାଟିଶୁଣି ଆଉ କେତେଜଣ ଫରେଷ୍ଟ ଅଫିସର ଓ ଡାକବଙ୍ଗଳାର କର୍ମଚାରୀମାନେ ବାହାରକୁ ଦୌଡ଼ି ଆସିଲେ । ସମସ୍ତଙ୍କର ହୋହଲାରେ ମଲା କୁଟ୍ରାଟିକୁ ଛାଡ଼ିଦେଇ କୁକୁରଦଳ ବଣଭିତରେ ଛପିଗଲେ ।

ପୋଷାକୁକୁର ପରି ଦେଖାଯାଉଥିବା ଏହି ଜୀବଟିର ଦେହ ଅପେକ୍ଷାକୃତ ଲମ୍ବା ଓ ନହ ନହକା । କାନ ଦୁଇଟି କାନ୍ଧ ଉପରକୁ ଝୁଲି ପଡ଼ିଥାଏ । ଦେହର ରଙ୍ଗ କସରା । ତଳିପେଟ ପାଖ ଅପେକ୍ଷାକୃତ ଧଳା । ଲାଞ୍ଜଟି ଛୋଟ ଓ ଝଙ୍କାଳିଆ ।

ଜୀବଜଗତରେ କାନିଡ଼ି (Canidae) ବୋଲି ଯେଉଁ ପରିବାରଟିକୁ ଧରାଯାଇଛି; ଗଧିଆ, ବିଲୁଆ, କୁକୁର ଏବଂ କୋକିଶିଆଳି ତାର ସଦସ୍ୟ । ଅନ୍ୟ ଜୀବକୁ ଶିକାର କରି ଏମାନେ ବଞ୍ଚନ୍ତି । ଶିକାର ପାଇଁ ଗୋଟିଏ ଜୀବଠାରେ ଯେଉଁ ପ୍ରକାରର ଅଙ୍ଗ ସବୁ ଖଞ୍ଜିବା ଆବଶ୍ୟକ, ପ୍ରକୃତି ସେହିଭଳି ଅଙ୍ଗପ୍ରତ୍ୟଙ୍ଗ ସେମାନଙ୍କଠାରେ ଖଞ୍ଜିଦେଇଛି । ଶକ୍ତିଶାଳୀ ମାଢ଼ି, ଶିକରକୁ ଧରିବାପାଇଁ ତୀକ୍ଷ୍ଣ ଦାନ୍ତ, ତୀବ୍ର ଘ୍ରାଣ ଓ ଶ୍ରବଣଶକ୍ତି । ଦ୍ରୁତ ଗତିରେ ଦଉଡିବାପାଇଁ ସରୁ ଅଣ୍ଟା, ଏହି ଜାତିର ଜୀବଙ୍କର ଶରୀର ଗଠନର ବିଶେଷତ୍ୱ ।

ଜୀବବିଜ୍ଞାନୀ ମାନଙ୍କ ମତରେ ଚାରିକୋଟି ବର୍ଷ ପୂର୍ବେ ମିଆସସ୍ ବୋଲି ଗୋଟିଏ ଜାତିର ଗଛଚଢ଼ା ସ୍ତନ୍ୟପାୟୀ ପ୍ରାଣୀ ଥିଲା । ସେହି ବଂଶରୁ

ନାନାଭାବରେ ପରିବର୍ତ୍ତିତ ହୋଇ ବାହାରିପଡ଼ିଲେ, ଭାରତର ବଣୁଆକୁକୁର (ଢୋଲ୍) । ଯାହା ଜଣାପଡ଼େ ଗଧିଆ, ବିଲୁଆ ଓ କୋକୀ ପରି ବଣକୁକୁର ଦଳ ମଧ, ଅତୀତରେ ଉତ୍ତର ପଶ୍ଚିମ ଗିରିପଥ ଅବା ଉତ୍ତର ପୂର୍ବ ସୀମାନ୍ତ ପଟୁ ଭାରତରେ ପ୍ରବେଶ କରିଛନ୍ତି । ସେ ଭିତରୁ ଗଧିଆ ଓ କୋକୀ ଅପେକ୍ଷାକୃତ ଖୋଲା ଯାଗାରେ ବସତି ସ୍ଥାପନ କଲା ବେଳକୁ ବଳିଆକୁକୁର ଜଙ୍ଗଲ ଅଞ୍ଚଳକୁ ଆଦରି ନେଇଛି । କାରଣ ଯଥେଷ୍ଟ ଖାଦ୍ୟ, ନିର୍ଭର ଯୋଗ୍ୟ ଆଶ୍ରୟ ଓ ପ୍ରଚୁର ପାନୀୟ ତାକୁ ଜଙ୍ଗଲ ଭିତରେ ସୁବିଧାରେ ମିଳିଥାଏ ।

ଓଡ଼ିଶାରେ ଦୁଇପ୍ରକାରର ବଣୁଆ କୁକୁର ଅଛନ୍ତି । ସେମାନଙ୍କୁ 'ପାତି ବଳିଆ' ଓ 'ପାଟ ବଳିଆ' କୁହାଯାଏ । ଏହି ଜୀବମାନଙ୍କର ଦୃଷ୍ଟିଶକ୍ତି, ଶ୍ରବଣଶକ୍ତି ଓ ଘ୍ରାଣ ଶକ୍ତି ଅତି ପ୍ରଖର । ବିଶେଷକରି ପ୍ରଖର ଘ୍ରାଣଶକ୍ତିହିଁ ସେମାନଙ୍କୁ ଶିକାର ସନ୍ଧାନରେ ସାହାଯ୍ୟ କରେ । କେବଳ ବୃହଦାକାୟ ହାତୀ ଓ ନିଜର ଜାତିଭାଇ ଗଧିଆ ଏବଂ ବିଲୁଆକୁ ଛାଡ଼ିଦେଲେ, ଜଙ୍ଗଲର ଅନ୍ୟ ଯେକୌଣସି ଜନ୍ତୁଙ୍କୁ ସେମାନେ ଆକ୍ରମଣ କରିଥାଆନ୍ତି । ଏପରିକି ବାଘ, ଚିତାବାଘ, ଭାଲୁ ଓ ଗୟଳ ମଧ ସେଥିରୁ ବାଦ ପଡ଼ନ୍ତି ନାହିଁ । ଏହି ବଡ଼ ବଡ଼ ଜନ୍ତୁମାନଙ୍କୁ ସେମାନେ ଯେ ଆହାର ପାଇଁ ଆକ୍ରମଣ କରନ୍ତି ତାହାନୁହେଁ ବରଂ ଅକସ୍ମାତ ଭେଟ ହୋଇଗଲେ ଏହି ଆକ୍ରମଣର ସୂତ୍ରପାତ ଘଟିଥାଏ । ସେମାନେ ମୂଖ୍ୟତଃ ଦଳବଦ୍ଧ ହୋଇ ଆକ୍ରମଣ କରନ୍ତି ଓ ରିଲେ ଦୌଡ଼ ଶୈଳୀରେ ପାଳିକରି ଶିକାରଟିକୁ ଗୋଡ଼ାନ୍ତି । ଯେତେବେଳେ ଜନ୍ତୁଟି ଦୌଡ଼ି ଦୌଡ଼ି ହାଲିଆ ଓ ଅବଶ ହୋଇପଡ଼େ, ସେତେବେଳେ ଦଳକଯାକ ବଳିଆକୁକୁର ତାକୁ ମାଡ଼ିବସି ଝୁଣିପକାନ୍ତି ।

ଜଙ୍ଗଲରେ ଏମାନଙ୍କର ଜନ୍ତୁଶିକାର ପଦ୍ଧତି ଅତି ନିଷ୍ଠୁର ଧରଣର । ଦିନର ଗରମ ସମୟରେ ଅର୍ଥାତ୍ ଦିନ ୧୦ଟାରୁ ଅପରାହ୍ନ ୪ଟା ଭିତରେ

ଏମାନେ ଶିକାର କରିବାକୁ ବାହାରିଥାନ୍ତି । ବେଳେ ବେଳେ ଜହ୍ନ ରାତିରେ ମଧ ଏମାନେ ଶିକାର ପଛରେ ଗୋଡ଼ାଉଥିବାର ଦେଖିବାକୁ ମିଳେ । ମଣିଷମାନେ ଯେପରି ହାକା କରି ଶିକାର କରନ୍ତି, ବଳିଆ କୁକୁର ଦଳ ସେହିପରି ଶିକାର କରନ୍ତି । ଦଳର ଅଧିକାଂଶ ବଳିଆ ମାଇଲ୍ ମାଇଲ୍ ଧରି ଶିକାର ପଛରେ ଗୋଡ଼ାଇଥାନ୍ତି । ବାକୀ ଅନ୍ୟ ସଦସ୍ୟମାନେ ପାର୍ଶ୍ୱରାସ୍ତାରେ ଯାଇ ସାମନାପଟୁ ଆକ୍ରମଣ କରନ୍ତି । ବଳିଆ କୁକୁର ଗୋଡ଼ାଇଲେ ସମ୍ବର ଓ ସିଂଘାଳ ଭୟରେ ବେଳେ ପାଣିରେ ପଶିଯିବାର ଦୃଶ୍ୟ ସାମୟିକ ଦେଖିବାକୁ ମିଳେ ।

ବଳିଆ କୁକୁର ଦଳ ଦକ୍ଷ ଶିକାରୀ ହୋଇଥିବାରୁ ସେମାନେ ମଲାଜନ୍ତୁଙ୍କୁ ଖାଇବାକୁ ଭଲପାଆନ୍ତିନାହିଁ । ପଚା,ସଢ଼ା ମାଂସ ଓ ଅନ୍ୟ ଜନ୍ତୁର ଶିକାରକୁ ମଧ ଛୁଅନ୍ତି ନାହିଁ । ଶିକାର କରୁଥିବା ଜନ୍ତୁଟିକୁ ଗୋଡ଼ାଇ ଗୋଡ଼ାଇ, ତା ଦେହରୁ ପୁଳା ପୁଳା ମାଂସ ଭିଡ଼ି ଖାଇବାରେ ସେମାନଙ୍କର ଆନନ୍ଦ । ଗରମ, ତାଜା ରକ୍ତ ଓ ଉଷୁମ ତଟକା ମାଂସ ଭିଡ଼ି ଖାଇବାରେ ସେମାନଙ୍କର ବେଶ୍ ପସନ୍ଦ । ଶିକାର ଜନ୍ତୁଟିର ଆଖି, ନାକ, କାନ, ଗଳା ଓ ତଳିପେଟକୁ ସେମାନେ ପ୍ରଥମେ ଆଘାତ କରନ୍ତି । ବନ୍ୟ ଶୂକର, ହରିଣ, ସମ୍ବର ଓ କୁଟ୍‌ରା ଏମାନଙ୍କର ପ୍ରୀୟ ଖାଦ୍ୟ । ବଳିଆକୁକୁର ଦଳର ଭୟଙ୍କରିତା ଯୋଗୁଁ ଜଙ୍ଗଲରେ 'ବାଘ' ମଧ ସେମାନଙ୍କୁ ଡରେ । ସେମାନଙ୍କର ଶିକାର କରିବା ପଦ୍ଧତି ପ୍ରମାଣ କରିଦିଏ ଯେ 'ଯୋଡ଼ାକୁ ଘୋଡ଼ା ସରି ନୁହେଁ । ବଳିଆକୁକୁର ଦଳ ଯେଉଁ ଜଙ୍ଗଲରେ ରୁହନ୍ତି, ଅନ୍ୟ ଜୀବଜନ୍ତୁମାନେ, ସେମାନଙ୍କର ଗନ୍ଧପାଇଲା ମାତ୍ରେ ସେ ଅଞ୍ଚଳ ଛାଡ଼ି ଚାଲିଯାଆନ୍ତି ।

ବଳିଆକୁକୁର ଘନ ଜଙ୍ଗଲରେ ରହୁଥିବାରୁ, ମଣିଷ ସହିତ ସେମାନଙ୍କର ସଂଘର୍ଷର ଅବକାଶ ନଥାଏ । ହଠାତ୍ ଭେଟ ହୋଇଗଲେ ମଧ,

ସେମାନେ ମଣିଷକୁ ଆକ୍ରମଣ କରନ୍ତି ନାହିଁ, କି ମଣିଷକୁ ଡରି ଦୂରକୁ ପଳାଇ ଯାନ୍ତି ନାହିଁ । କଦବା କ୍ୱଚିତ୍ ଖାଦ୍ୟର ଅଭାବ ଘଟିଲେ ସେମାନେ ଗାଈ ଗୋରୁଙ୍କୁ ଆକ୍ରମଣ କରିଥାନ୍ତି । ଅନ୍ୟଥା, ଶସ୍ୟ କ୍ଷେତ୍ରରୁ ଫସଲ ଖାଇ ନଷ୍ଟ କରୁଥିବା ବନ୍ୟ ଶୂକର ଦଳଙ୍କୁ ମାରିଖାଇ ଯାଉଥିବାରୁ, ସେମାନେ ପ୍ରକାରାନ୍ତରେ ମଣିଷର ଉପକାର କରିଥାନ୍ତି ।

ଖରାଦିନେ ବଳିଆକୁକୁର ଦଳଦଳ ହୋଇ ବୁଲନ୍ତି । ଗୋଟିଏ ଦଳରେ ଦୁଇ ବା ତହିଁରୁ ଅଧିକ ପରିବାର ରହନ୍ତି । ଏହି ସମୟରେ ଜଙ୍ଗଲରେ ପାନୀୟ ଜଳର ଅଭାବ ଥାଏ ଓ ପାଣି ଘାଟ ନିକଟରେ ଶିକାର ପାଇଁ ଅନ୍ୟ ଜନ୍ତୁ ମଧ ସହଜରେ ମିଳିଯାନ୍ତି । ବିଲୁଆ ପରି ଏମାନେ ମଧ ଅସହ୍ୟ ଗରମ ବେଳାରେ ପାଣିରେ ପଶି କଟେଇବାକୁ ଭଲ ପାଆନ୍ତି । ଶୀତଦିନ ଆରମ୍ଭରେ ସେମାନେ ଦଳଭାଙ୍ଗିକେଇ ହଳ ହଳ ହୋଇ ବୁଲନ୍ତି । କାରଣ ଶୀତଋତୁ ହିଁ ସେମାନଙ୍କର ପ୍ରକୃଷ୍ଟ ପ୍ରଜନନ ସମୟ । ଜାନୁୟାରୀ, ଫେବୃୟାରୀ ମାସରେ ମାଈ କୁକୁର ଛୁଆ ଦେଇଥାଏ । ପାହାଡ଼ ଗୁମ୍ଫା, ପଥର ଖୋଲ ବା ମାଟି ଖୋଳି ଏମାନେ ଛୁଆ ଦିଅନ୍ତି । ୬୦ ରୁ ୭୦ ଦିନ ଗର୍ଭଧାରଣ କଲାପରେ ଥରକେ ମାଆ ପେଟରୁ ଚାରି, ପାଞ୍ଚଟି ଛୁଆ ଜନ୍ମ ହୋଇଥାନ୍ତି ।

ପିତା ମାତା ଓ ଛୁଆମାନଙ୍କ ଭିତରେ ଦୀର୍ଘଦିନର ସମ୍ବନ୍ଧହିଁ ସେମାନଙ୍କର ସାମାଜୀକ ଜୀବନର ମୂଳଦୁଆ । ମାଆମାନେ ପ୍ରଥମେ କଞ୍ଚାମାଂସକୁ ଗିଳି ଦରହଜମ କରନ୍ତି ଓ କିଛି ସମୟ ପରେ ବାନ୍ତିକରି ସେହି ମାଂସ ଖଣ୍ଡକୁ ଛୁଆମାନଙ୍କୁ ଖାଇବାକୁ ଦିଅନ୍ତି । ଛୁଆମାନେ ମଧ ପିଲାଟିଦିନରୁ କଞ୍ଚାମାଂସ ଓ ରକ୍ତର ଗନ୍ଧ ପାଇଲେ ଅସ୍ଥିର ହୋଇ ଉଠନ୍ତି । ଅନୁମାନ କରାଯାଏ ଛୁଆବେଳେ ପୋଷା ମନାଇଲେ, ଏମାନେ ମଧ ଭଲ ପୋଷାମାନି ପାରନ୍ତି ।

ଜଙ୍ଗଲରେ ଏମାନଙ୍କର କିଛି ନିର୍ଦ୍ଦିଷ୍ଟ ସୀମାରେଖା ବା ଚଉହଦୀ ନାହିଁ ବୋଲି ଅନୁମାନ କରାଯାଏ । ଜନ୍ତୁ ପଛରେ ଗୋଡ଼ାଇ ଗୋଡ଼ାଇ ଏମାନେ ଅନେକ ଦୂରକୁ ଚାଲିଯାଇ ପାରନ୍ତି । ଗୋଟିଏ ଦଳ ଯେଉଁ ଜଙ୍ଗଲରେ ରହି ଶିକାର କରନ୍ତି, ସେହି ଜଙ୍ଗଲକୁ ଅନ୍ୟ ବଳିଆ କୁକୁର ଦଳ ଆସନ୍ତି କି ନାହିଁ ସେ ବିଷୟରେ ବିଶେଷ ଅନୁସନ୍ଧାନ କରାଯାଇନାହିଁ ।

ବେଳେବେଳେ ଜଙ୍ଗଲରେ ବଳିଆ କୁକୁର ମାନଙ୍କର ସଂଖ୍ୟା ଯଥେଷ୍ଟ ବଢ଼ିଯାଏ କିନ୍ତୁ ପରେ ପରେ ହଠାତ୍ କମିଆସେ । ଏହା ପ୍ରକୃତିର ନିୟନ୍ତ୍ରଣ । ବଡ଼ ବଡ଼ ଜନ୍ତୁଙ୍କୁ ଶିକାର କଲାବେଳେ ଖଣିଆ ଖାବରା ହୋଇ ଅନେକ ମରନ୍ତି । ତାଛଡ଼ା ସେମାନଙ୍କର ସଂଖ୍ୟା ଶିଖରରେ ପହଞ୍ଚିଗଲେ, ଏକ ଅଜଣା ରୋଗରେ ପଡ଼ି ଅଧିକାଂଶ ମୃତ୍ୟୁବରଣ କରନ୍ତି । ଜଙ୍ଗଲରେ ଖାଦ୍ୟର ଅଭାବ ଘଟିବା, ସେମାନଙ୍କ ସଂଖ୍ୟା କମିଯିବାର ଏକ କାରଣ ମଧ ହୋଇପାରେ । କାରଣ ଖାଦ୍ୟ ଓ ଖାଦକ ଭିତରେ କୌଣସି ସମନ୍ୱୟ ସେମାନେ ରଖନ୍ତି ନାହିଁ । ଆବଶ୍ୟକତାଠାରୁ ଅଧିକ ଜନ୍ତୁ ଶିକାର କରନ୍ତି । ବଳକା ମାଂସକୁ ପରେ ଖାଇବାପାଇଁ ସାଇତି ରଖିବା ସେମାନଙ୍କର ଅଭ୍ୟାସ ନୁହେଁ । ଗୋଟିଏ ଜନ୍ତୁ ମାରି ସାରିଲା ପରେ ବି, ସେମାନେ ଅନ୍ୟ ଜନ୍ତୁ ମାରିବା ପାଇଁ ଗୋଡ଼ାନ୍ତି । ଯାହାକୁ କହନ୍ତି ପକ୍କା ବଣୁଆ ଯୋଦ୍ଧା ଜାତି !





# ବିଲୁଆ

ମୁହଁ ସଂଜ ହୋଇ ଆସିଲା ବେଳକୁ ଗାଁର ଘରେ ଘରେ ତୁଳସୀ ଚଉରା ମୂଳେ ଦୀପ ଜଳିଉଠେ । ମନ୍ଦିରରେ ସଞ୍ଜଆଳତୀ ବେଳର ଘଣ୍ଟଧ୍ୱନି ଶୁଭେ । ଏତିକିବେଳେ ଗାଁ ପଛବାଟ ଆମ୍ବତୋଟା, ପୋଖରୀହୁଡ଼ା ବା କିଆବୁଦା ଭିତରୁ ବିଲୁଆଟିଏ ଡାକଦିଏ । ହୁକେ ହୋ, 'ହୁକେ ହୋ' । ଗୋଟିଏ ବିଲୁଆ ଡାକିଲେ ସବୁବିଲୁଆ ସ୍ୱର ମିଳାନ୍ତି 'ହୁକେ ହୋ' । କିଛି ବର୍ଷ ତଳେ ସବୁ ମଫସଲ ଗାଁ ଗୋହରୀରେ ବା ବିଲ ହିଡ଼ରେ ଫେରୁ ଫେରୁ ଯଦି ବିଲୁଆଟିଏ ସହିତ ମୁହାଁ ମୁହିଁ ଭେଟ ହୋଇଯାଏ, ତେବେ ଏକମୁହାଁ ହୋଇ ବିଲୁଆ ଦଉଡ଼ି ପଳାଏ । ପିଲାଏ ଗୀତଗାଆନ୍ତି :–

"ବିଲୁଆ ନନାରେ ବିଲୁଆ ନନା
ଘର ପୋଡ଼ି ଗଲା ପଛକୁ ଅନା"

ଏହି ତଗଟି ବିଲୁଆର ଅଭ୍ୟାସ ଉପରେ ଆଲୋକପାତ କରିଥାଏ କାରଣ ବିଲୁଆ ସ୍ୱଭାବତଃ ଭୀରୁ ଓ ଭୟାଳୁ । ଅତ୍ୟନ୍ତ ଜରୁରୀ ନହେଲେ ସେ କେବେ ପଛକୁ ଫେରି ଅନାଏ ନାହିଁ ।

ଆମ ଦେଶର ସର୍ବତ୍ର ବିଲୁଆ ଦେଖିବାକୁ ମିଳେ । ହିମାଳୟର ୧୨,୦୦୦ ଫୁଟ ଉଚ୍ଚତାରୁ ଆରମ୍ଭକରି ମରୁଭୂମିର ଶୁଷ୍କ ସମତଳ ଅଞ୍ଚଳରେ ମଧ୍ୟ ସେମାନେ ଥାଆନ୍ତି, କିନ୍ତୁ ବିଶେଷ କରି ସେମାନଙ୍କୁ ଦେଖିବାକୁ ମିଳେ ଗାଁ, ଗଣ୍ଡା, ସହର ବଜାରପଛପଟେ ଥିବା ବୁଦୁବୁଦୁକିଆ ଜଙ୍ଗଲରେ ବା କ୍ଷେତବାଡ଼ିରେ । ଭୂଇଁରେ ଗାତକରି, ପରିତ୍ୟକ୍ତ ଭଙ୍ଗା ଡିହରେ ବା ଗହଳିଆ ଘାସ ବା ବୁଦୁବୁଦୁକିଆ ଜଙ୍ଗଲରେ ସେମାନେ ରହନ୍ତି । ବଡ଼ ବଡ଼ ଗଛର ମୂଳରେ କୋରଡ଼ ଥିଲେ, ତାହା ସେମାନଙ୍କ ପାଇଁ ଏକ ଆବସସ୍ଥଳି । ବିଲୁଆ ମଧ୍ୟ ଏକ ନିଶାଚର ପ୍ରାଣୀ । ସଂଜ ହେଲେ ସେମାନେ ପଦାକୁ ବାହାରନ୍ତି । ଭୋରବେଳକୁ ନିଜ ନିଜ ବସାକୁ ଫେରିଯାନ୍ତି । ଦିନସାରା ସେମାନେ ଶୋଇରହନ୍ତି, ବେଳେ ବେଳେ ଶୀତଦିନେ ମେଘୁଆପାଗରେ ସେମାନେ ଦିନରେ ମଧ୍ୟ ବାହାରକୁ ଆସନ୍ତି । ଖରାଦିନେ ପାଣିପିଇବା ପାଇଁ ସେମାନେ ଦିନବେଳେ ବାହାରନ୍ତି । ପାଖବଣରୁ ଗୋଛାଏ 'ମସ୍' ଜାତୀୟ ଗଛ ମୁହଁରେ ଧରି ଶିଆଳ ପାଣିରେ ପଶି ଗାଧୋଇବାର ଦୃଶ୍ୟ କେବେକେବେ ଦେଖିବାକୁ ମିଳେ ।

ଖାଇବାରେ ବିଲୁଆମାନଙ୍କର କିଛି ବାରଣ ନଥାଏ । ସେମାନେ ପ୍ରକୃତିର ମଇଳା ଅବର୍ଜନା ପରିଷ୍କାରକ । ଶାଗୁଣା ପରି କୌଣସି ମଡ଼ ଦେଖିଲେ, ସଂଗେ ସଂଗେ ସେମାନେ କାମରେ ଲାଗିଯାଆନ୍ତି । ବାଘ, ଚିତାବାଘ ଆଦି ଖାଇକରି ଛାଡ଼ିଯାଇଥିବା ମଡ଼ର ଅବଶିଷ୍ଟାଂଶକୁ ମଧ୍ୟ ସେମାନେ ଚାଟିଚୁଟି ସଫା କରିଦିଅନ୍ତି । ଶିକାର କରିବାପାଇଁ ସେମାନେ ଦଳ ଦଳ ହୋଇ ବାହାରନ୍ତି । ସେତେବେଳେ ସେମାନଙ୍କ ଭିତରେ ଜାତିଆଣ ଭାବ ବେଶ୍ ବାରିହୋଇପଡ଼େ । କିନ୍ତୁ ଅନ୍ୟ ସମୟରେ ସେମାନେ ଏକା ଏକା ବୁଲନ୍ତି । କେବଳ ମଡ଼ ବା ପଚାସଢ଼ା ମାଂସ ଖାଇବା ବ୍ୟତୀତ ବେଳେବେଳେ ସେମାନେ ଶିକାର ମଧ୍ୟ କରନ୍ତି । ଗାଁ ପାଖରେ ରହୁଥିବା ବିଲୁଆ କୁକୁଡ଼ା, ଛେଳିଛୁଆ ଓ ମେଣ୍ଢାଛୁଆ ଉଠେଇ ନେବାର ଦୃଷ୍ଟାନ୍ତ ଅଛି । ସେମାନେ ଦଳ ଦଳ ହୋଇ କୁଟ୍‌ରା ବା ହରିଣ ଛୁଆ ଧରିବାକୁ

ଗୋଡ଼ାଇଥାନ୍ତି । ଖରାଦିନେ କ୍ଷେତର ତରଭୁଜ ଓ ଶୀତଦିନେ ଆଖୁ ଚୋବାଇବାର ଅପବାଦ ଅଛି । ସେହିପରି ଶୀତଦିନେ କଫି ମଞ୍ଜି ଖାଇବାପାଇଁ କଫି ବଗିଚାରେ ବିଲୁଆଙ୍କର ମେଳା ଲାଗିଯାଏ ।

ବଣରେ ବାଘ ଓ ବିଲୁଆଙ୍କ ଭିତରେ ଏକ ସକ୍ରିୟ ଗୋପନ ସମ୍ପର୍କ ଥାଏ ବୋଲି ଅନେକ ଶିକାରୀ କୁହନ୍ତି । ବିଲୁଆ ଜଙ୍ଗଲରେ ଏକପ୍ରକାର ଶବ୍ଦକରି ବାଘକୁ ଶିକାରର ଅବସ୍ଥିତି ସଂପର୍କରେ ସୂଚନା ଦିଏ । ଖାଦ୍ୟ ଲୋଭରେ ବିଲୁଆ ବାଘ ଓ ଚିତାବାଘ ଉପରେ ନିର୍ଭର ଶୀଳ । ବାଘ ମଢ଼ ଖାଉଥିବାବେଳେ ବିଲୁଆ ବେଶ୍ ଦୂରତା ବଜାୟରଖେ । କିନ୍ତୁ ଦିନହେଲେ ବାଘ ନିଶ୍ଚିତଭାବେ ମଢ଼କୁ ଛାଡ଼ିଦେଇ ଚାଲିଯାଏ । ସେତେବେଳେ ବିଲୁଆର ଭୋଜିପାଳି । ଏଥିରୁ ମନେହୁଏ, ବିଲୁଆ ବେଶ୍ ଚାଲାକ ଚତୁର । ସେ ତେଣୁ ଚତୁରତାର ସହ ଜଙ୍ଗଲରେ ବାଘର ପିଛା ଧରିଥାଏ ।

ବିଲୁଆର ଚତୁରତା ସଂପର୍କରେ 'ନୀଳବର୍ଣ୍ଣ ଶୃଗାଳ' କାହାଣୀ ମଧ୍ୟ ଉଣା ଅଧିକେ ଆମକୁ ସୁବିଦିତ । ବିଲୁଆଟିଏ ଅନ୍ଧାରରେ ଗାଁ ଆଡ଼କୁ ଯାଉଯାଉ ବାଟରେ ଧୋବାର ନୀଳକୁଣ୍ଡରେ ପଡ଼ିଗଲା । କୁଣ୍ଡରୁ ବାହାରିଲା ବେଳକୁ ଦେହ ତାର ନୀଳବର୍ଣ୍ଣ ହୋଇଗଲା । ଜଙ୍ଗଲର ଅନ୍ୟଜନ୍ତୁମାନେ ତାକୁ ଦେଖି, ବାହାରୁ କିଏ ଗୋଟେ ଅଜଣା ଜନ୍ତୁ ଆସିଛି ବୋଲି ଭାବି ପଳାୟନ କରିବାକୁ ଲାଗିଲେ । ନିଜ ଜାତିଭାଇମାନେ ମଧ୍ୟ ତାକୁ ଚିହ୍ନି ପାରିଲେନାହିଁ । ଏହି ସୁଯୋଗରେ ବିଲୁଆ ନିଜକୁ ବଣର ରାଜା ବୋଲି ଘୋଷଣା କରିଦେଲା । ବଣର ରାଜାସିନା ହୋଇଗଲା; କିନ୍ତୁ ସ୍ୱଭାବ କୋଉଠି ଯାଉଛି । ସଞ୍ଜବେଳେ ଅନ୍ୟ ବିଲୁଆମାନେ ଯେତେବେଳେ 'ହୁକେହୋ' ରଡ଼ି ଛାଡ଼ିଲେ; ସେ ମଧ୍ୟ ତାଳ ଦେଇ 'ହୁକେହୋ' ବୋବାଇବାକୁ ଲାଗିଲା । ଫଳରେ ତା' ଚାଲାକ ପଣିଆ ଧରାପଡ଼ିଗଲା ଓ ଅନ୍ୟ ଜନ୍ତୁମାନେ ତାକୁ ମାରିବାକୁ ଗୋଡ଼ାଇଲେ । ଏଥିରୁ ବିଲୁଆ ଅଳ୍ପ ବୁଦ୍ଧିଆ ବୋଲି

ଜଣାପଡ଼େ । ମଡ଼ର ସନ୍ଧାନ ମିଳିଲେ, କୌଣସି ବିପଦ ଆପଦକୁ ଖାତିର ନକରି ସମସ୍ତ ବିଲୁଆ ଏକାଠି ହୋଇଯାନ୍ତି । ଏହି ସମୟରେ ଦଳଭିତରୁ ଜଣକୁ ଗୁଳିକରି ମାରି ଦିଆଗଲେ ମଧ୍ୟ, ଅନ୍ୟମାନେ ଦୁଃଖିତ ନହୋଇ ମଡ଼ ଖାଇବାପାଇଁ ଚାଲିଆସନ୍ତି । ଫଳରେ ଧୂର୍ତ୍ତ ଶିକାରୀମାନେ ଏହାର ସୁଯୋଗ ପାଇ ବେଳେବେଳେ ଦଳଦଳ ବିଲୁଆ ଶିକାର କରିପକାନ୍ତି । କୋକିଶିଆଳି,.ହେଟା (Waloof) ବିଲୁଆ, ବଳିଆକୁକୁର ଏସବୁ କୁକୁର ଜାତୀୟ ଜୀବ । ଅନେକ ଅନେକ ବର୍ଷ ତଳେ ସେମାନେ ଉତ୍ତର ପଶ୍ଚିମ ଗିରିପଥ ଦେଇ ଭାରତକୁ ଆସିଛନ୍ତି ବୋଲି ଜଣାପଡ଼େ । କ୍ରମେ ମରୁଭୂମିଠାରୁ ଆରମ୍ଭକରି ଘନ ଜଙ୍ଗଲ, ସମତଳ ଅଞ୍ଚଳ, ପାହାଡ଼ିଆ ଅଞ୍ଚଳ ଓ ସବୁ ପାରିପାର୍ଶ୍ୱିକ ପରିସ୍ଥିତିରେ ବିଲୁଆ ନିଜର ଆସ୍ଥାନ ଜମେଇ ଦେଇଥାଏ । କୁକୁର ପରିବାରର ହୋଇଥିବାରୁ ବିଲୁଆକୁ ମଧ ଚେଷ୍ଟାକଲେ ପୋଷା ମନାଯାଇପାରେ । ଗାଁ ପଛପଟେ ତୋଟାରେ ବିଲୁଆ, କୁକୁର ଗୋଡ଼ିଆଗୋଡ଼ି ହୋଇ ଖେଳୁଥିବାର ଦୃଶ୍ୟ ବେଳେବେଳେ ଦେଖିବାକୁ ମିଳେ । ବେଳେବେଳେ ଏହା ମଧ ପରସ୍ପର ପ୍ରତି ଆକ୍ରମଣର ପୂର୍ବସୂଚନା ଦିଏ ।

ବିଲୁଆ ଦେଖିବାକୁ କୁକୁର ଭଳି ଛୋଟ ଜୀବଟିଏ । ଗୋଡ଼ଗୁଡ଼ିକ କସରା । ପେଟ ଓ ବେକର ତଳପଟ ଧଳା । ପିଠି ଉପରେ କଳା, ମାଟିଆ ଓ ଧଳାରଙ୍ଗର ବାଳ । ମୁହଁଟି ଗୋଜିଆ । ଆଖିଗୁଡ଼ିକ ଉଜ୍ଜ୍ୱଳ ଚକ୍‌ଚକ୍ । ଆଲ୍‌ସେସିଆନ୍ କୁକୁର ପରି ଲାଞ୍ଜ । ଏମାନଙ୍କର ଦୃଷ୍ଟି ଶକ୍ତି ଓ ଶ୍ରବଣ ଶକ୍ତି ପ୍ରଖର । ବିଲୁଆର ପାରିବାରିକ ଜୀବନ ବେଶ୍ ଗୋପନୀୟ । ବର୍ଷର ଯେକୌଣସି ସମୟରେ ଗାତ ଭିତରେ ବା ଅନ୍ଧାରୁଆ ଯାଗାରେ ଏମାନଙ୍କର ଛୁଆ ଜନ୍ମ ହୁଅନ୍ତି । ମା କିପରି ସେମାନଙ୍କୁ ଲାଳନପାଳନକରେ ବା କେତେବେଳେ ସେମାନେ ପ୍ରାଣୟଯୁକ୍ତ ହୁଅନ୍ତି, ଏବିଷୟରେ ବିଶେଷ କିଛି ତଥ୍ୟ ଜଣାନାହିଁ ।

ସୂର୍ଯ୍ୟ କିରଣଥାଇ ମେଘୁଆ ଆକାଶରେ ଇନ୍ଦ୍ରଧନୁ ଦେଖାଗଲେ ବିଲୁଆମାନଙ୍କର ସଂମିଳୀତ ହୁକେ ହୋ ଶବ୍ଦ ଶୁଣାଯାଏ । ସେତେବେଳେ ଗାଁର ପିଲାମାନେ ଗାଇ ବୁଲନ୍ତି–

''ଖରା ପଡ଼ିଛି, ବର୍ଷା ହେଉଛି

ବିଲୁଆ ନ଼ନା, ବାହା ହୋଉଛି ।

ବୋଧହୁଏ ଶରତଋତୁହିଁ ସେମାନଙ୍କର ମିଳନର ଋତୁ । ଗାଁ ଗହଳିର ଲୋକମାନେ କୌଣସି କାମରେ ଅନୁକୂଳକରି ଘରୁ ବାହାରି ଯାଉଥିଲା ବେଳେ ଯଦି ନିଜର ବାମପଟେ ବିଲୁଆଟିଏ ଦେଖନ୍ତି ତେବେ କାର୍ଯ୍ୟ ଶୁଭ ହେବ ବୋଲି ଆଶା କରନ୍ତି । ଏହି ଅନ୍ଧବିଶ୍ୱାସଟି ଅନେକ କାଳରୁ ଚଳି ଆସୁଛି । କିନ୍ତୁ ରାତି ଅଧରେ ଗୋଟିକିଆ ଅଣ୍ଡିରା ବିଲୁଆ ବୋବାଇଲେ ତାହା ଅଶୁଭ ବୋଲି ଧରାଯାଏ । ସେଥିପାଇଁ ପ୍ରବାଦ ଅଛି –

''ଅଣ୍ଡିରା ବିଲୁଆ ଡାକ

ମଡ଼ା ସାଙ୍ଗିଆକୁ ଡ଼ାକ''

ଗାଁ ଗହଳିର ଏହି ପରିଚିତ ଜୀବଟିର ସଂଖ୍ୟା ଏବେ ଦ୍ରୁତ ଗତିରେ କମିଆସିଲାଣି । ପ୍ରଥମେ ବିଲୁଆକୁ ଅନିଷ୍ଟକାରୀ ଜୀବ ବୋଲି ଗଣାଯାଉଥିଲା ଓ ସେଥିପାଇଁ ତାକୁ ବନ୍ୟଜନ୍ତୁ ଆଇନ୍‌ରେ ପଞ୍ଚମ ଅନୁସୂଚୀ, (5th Schedule) କାଉ, ବାଦୁଡ଼ି, ମୂଷା ଇତ୍ୟାଦିଙ୍କ ସହିତ ରଖାଯାଇଥିଲା । ଏହି ଜୀବମାନଙ୍କୁ ମାରିବାପାଇଁ କୌଣସି କଟକଣା ନଥିଲା । ବରଂ ଏମାନେ (vermin list) ରେ ଥିବାରୁ ଏମାନଙ୍କୁ ମାରିବା ଅଧିକ ସ୍ପୃହଣୀୟ ମନେ ହେଉଥିଲା । ଫଳରେ ବିଲୁଆମାନଙ୍କର ସଂଖ୍ୟା କମି ଆସିଲା । ଏବେ ସଂଜବେଳେ ଗାଁ ଗଣ୍ଡାରେ, ଏହି ପରିଚିତ ସ୍ୱର ପ୍ରାୟ ଆଉ ଶୁଣିବାକୁ ମିଳୁନାହିଁ । ପରିବେଶରେ ପ୍ରାକୃତିକ ଉପାୟରେ ଭାରସାମ୍ୟ ରକ୍ଷାକରୁଥିବା ଏହି ଜୀବଟିକୁ ନିକଟରେ ପୁଣି ନିଆଯାଇଛି ଓ ଏହାକୁ ଶିକାର କରିବା ଉପରେ କଟକଣା ଲାଗୁ କରାଯାଇଛି ।



# ହାଏନା

ଶରୀରଗଠନ ଦୃଷ୍ଟିରୁ ହାଏନା, 'କୁକୁର' ପରିବାରର ସଦସ୍ୟ ରୂପେ ପ୍ରତୀୟମାନହୁଏ । ବଳିଆ କୁକୁର, ବିଲୁଆ, ଗଧିଆ ଏବଂ କୋକିଶିଆଳି ମଧ୍ୟ ଏହି 'କୁକୁର' ପରିବାରର ଅନ୍ତର୍ଭୁକ୍ତ । ହାଏନାର ଗୋଡ଼ ଓ ପାଦ ଅବିକଳ କୁକୁର ପରି । କିନ୍ତୁ ଶରୀର ବିଜ୍ଞାନଦୃଷ୍ଟିକୋଣରୁ ଏହି ଜୀବଟିର ବିଲେଇ ପରିବାରର ସଦସ୍ୟମାନଙ୍କ ସହିତ ଯଥେଷ୍ଟ ସାମଞ୍ଜସ୍ୟ ଅଛି । ଯଖ ଭଳି ଗୋଜିଆ ମୁହଁ, ପାଟି ପାଖଟି କଳା, ବଡ଼ ବଡ଼ ଠିଆ କାନ । ଶରୀର ଗଠନର ଆକୃତି ଗଧିଆ ସହିତ ଅନେକଟା ମିଶିଯାଏ । ଦୂରରୁ ଦେଖିଲେ କଳା କଳା ପଟିଯୁକ୍ତ ଦେହର ଚମଡ଼ା ବାଘ ଚମଡ଼ା ପରି ମନେହୁଏ । ଏଥିପାଇଁ ଅନେକ ଯାଗାରେ ହାଏନା 'ହେଟାବାଘ' ରୂପେ ପରିଚିତ । ଘୁଷୁରୀ ପରି ବେକପାଖରେ ବହଳ କଳାବାଳ । ବିଲୁଆର ଲାଞ୍ଜ ପରି ଲାଞ୍ଜ ଆଗରେ ମେଞ୍ଚାଏ ବାଳ ଥାଏ । ଲାଞ୍ଜଟି ଛୋଟ, କୁକୁରର ପଞ୍ଝାପରି ପଞ୍ଝା କିନ୍ତୁ ଶରୀର ଗଠନ ଓ ଆକୃତିରେ କୁକୁରଠାରୁ ବଡ଼ ।

ଘଞ୍ଚ, ନିବିଡ଼ ଜଙ୍ଗଲରେ ହାଏନା ଦେଖିବାକୁ ପ୍ରାୟତଃ ମିଳେ ନାହିଁ । ବରଂ ଖୋଲା ପଡ଼ିଆ, ବୁଦୁବୁଦୁକିଆ ଜଙ୍ଗଲ, ପଥୁରିଆ ପାହାଡ଼ ଓ ନାଳକଡ଼ର

ଘାସ ବଣରେ ସେମାନେ ରୁହନ୍ତି । ଆମ ଦେଶର ଶୁଷ୍କ ପତ୍ରଝଡ଼ା ଜଙ୍ଗଲରେ ଏମାନଙ୍କୁ ବେଶ୍ ଦେଖିବାକୁ ମିଳିଥାଏ । ଦିନର ଅତ୍ୟଧିକ ଗରମ ଓ ଉତ୍ତପରୁ ରକ୍ଷା ପାଇବାକୁ ଏମାନେ ପାହାଡ଼ ଗୁମ୍ଫାରେ, ବଡ଼ ବଡ଼ ପଥର ଖୋଲରେ ବା ନିଜେ ଗାତ ଖୋଳି ଆଶ୍ରୟ ନେଇଥାନ୍ତି । ଅନେକ ସମୟରେ ଝିଙ୍କପକ୍ଷୀର ଗାତକୁ ବଡ଼ କରି ହାଏନା ସେଠି ରହିଯାଏ ।

ହାଏନା ଯଦିଓ ମାଂସାହାରୀ ଜୀବ ଭିତରେ ଗଣାଯାଏ, ତଥାପି ସେ ନିଜେ କ୍ୱଚିତ୍ ଶିକାର କରିଥାଏ । ବାଘଭଳି କୁଦାମାରି ଶିକାରକୁ ମାଡ଼ି ବସିବା ବା ବଳିଆକୁକୁର ପରି ଦଉଡ଼ି ଦଉଡ଼ି ଶିକାର ଜନ୍ତୁକୁ କରାୟତ କରିବାର କୌଶଳ ତାକୁ ଜଣାନାହିଁ । ତେଣୁ ଦୁର୍ବଳିଆ ଜୀବଜନ୍ତୁ ମଲା ପର୍ଯ୍ୟନ୍ତ ସେ ଅପେକ୍ଷା କରିଥାଏ; କିମ୍ବା ଅନ୍ୟ କେଉଁ ବଡ଼ ଜୀବ ଶିକାର କରି ଖାଇସାରିଲାପରେ ମଢ଼ର ଅବଶିଷ୍ଟାଂଶକୁ ସେ ଚାହିଁ ରହିଥାଏ । ସମୟେ ସମୟେ ବାଘ ବା ଚିତାବାଘ ପାଇଁ ଖୁଣ୍ଟରେ ବନ୍ଧାଯାଇଥିବା ଛେଳିଟିକୁ ମାରିପକାଇ ସେ ମନେ ମନେ ବାହାବା ନିଏ ।

ପେଷାରେ ମଇଳା ସଫା କରିବା 'ହାଏନା'ର ଧର୍ମ । ଏପରିକି ତିନି, ଚାରିଫୁଟ ତଳେ ମଲାଜନ୍ତୁଟିଏ ପୋତା ହୋଇଥିଲେ ମଧ ସେ ଗନ୍ଧବାରି, ସେଠି ପହଞ୍ଚିଯାଏ ଓ ଗାତ ଖୋଳି ଶବଟିକୁ ବାହାର କରି ଆଣେ । ଜଙ୍ଗଲରେ କେଉଁଠି ମଢ଼ଟିଏ ପଡ଼ିଥିଲେ, ବାସ୍ନା ବାରିବାରି ସେ ସେଠି ପହଞ୍ଚିଯାଏ ଏବଂ ସମସ୍ତଙ୍କ ପଛରେ ମଢ଼ ପାଖକୁ ଯାଏ । ବାଘ ଓ ଚିତାବାଘ ଶିକାର କରି ସେମାନଙ୍କର ଭାଗ ଖାଇସାରିଲାପରେ ବିଲୁଆ, ଶାଗୁଣା ଆଦି ମଢ଼ ପାଖରେ ପହଞ୍ଚିଯାନ୍ତି । ବଳି ଥିବା ମାଂସକୁ ସେମାନେ ସାରିଲାପରେ, ଯାହାକିଛି ବଳକାଥାଏ, ସେତକ ହାଏନାର ଖାଦ୍ୟ ହୁଏ ।

ହାଡ଼କୁ ଭାଙ୍ଗିକରି ଖାଇବାପାଇଁ ହାଏନାର ଲମ୍ବା ଦାନ୍ତ ଓ ମାଢ଼ି ଶକ୍ତ ହୋଇ ତିଆରି ହୋଇଅଛି । ସେହିପରି ହାଡ଼କୁ ହଜମ କରିବା ପାଇଁ ସେମାନଙ୍କର ପାକସ୍ଥଳୀ ମଧ୍ୟ ବେଶ୍ ସକ୍ଷମ । ବଣରେ ପଡ଼ିଥିବା ମଳରୁ ହାଏନାର ମଳ ସହଜରେ ବାରିହୁଏ । କାରଣ ଏଗୁଡ଼ିକ ଧଳାହାଡ଼ ଗୁଣ୍ଡର ଗୋଲଗୋଲ ବଲ୍ ସଦୃଶ ଚିକ୍‌ଚିକ୍ କରୁଥାଏ ।

ବାଘ କିମ୍ବା ଚିତାବାଘ ଯେତେବେଳେ ଶୀକାର କରିଥିବା ଜନ୍ତୁ ନିକଟରେ ନଥାନ୍ତି ବା ମଢ଼କୁ ଛାଡ଼ି ଚାଲିଯାଇଥାଆନ୍ତି, ସେତେବେଳେ ହାଏନା ସନ୍ତର୍ପଣରେ ସେଠାକୁ ଆସିଥାଏ । ସେ ସମୟରେ ସେ ବେଶ୍ ଭୟଭୀତ ଜଣାପଡୁଥାଏ ଏବଂ ଟଙ୍ଗ ଟଙ୍ଗ ହେଉଥାଏ । ବଡ଼ ଜନ୍ତୁଟିର ଗନ୍ଧ ବାରି ପାରିଲେ, ଦଉଡ଼ି ପଳାଏ । ଗୋଟିଏ ମଢ଼ ନିକଟରୁ ହାଏନା ପଳାଇଗଲେ ଓ ଆଉ ସେଠିକୁ ନଫେରିଲେ, ଶୀକାରୀମାନେ ନିଶ୍ଚିନ୍ତ ହୋଇଯାଆନ୍ତି ଯେ, ବଡ଼ ଜନ୍ତୁ ବା ଶୀକାରୀ ଜନ୍ତୁଟି ମଢ଼ ନିକଟକୁ ଆସୁଛି ।

ଓଡ଼ିଶାର ବିଶିଷ୍ଟ ବନ୍ୟଜନ୍ତୁବିଶାରଦ ସ୍ୱର୍ଗତ ସରୋଜରାଜ ଚୌଧୁରୀ, ଯଶୀପୁର ଡାକବଙ୍ଗଳାରେ 'ଖଇରୀ' ବାଘୁଣୀ ସାଙ୍ଗକୁ ଗୋଟିଏ ହାଏନା ମଧ୍ୟ ପାଳିଥିଲେ । ତା'ର ଡାକ ନାଁ ଦେଇଥିଲେ 'ଭାଇନା', 'ଭାଇନା'ର ଗୋଟିଏ ଆଖି ଜନ୍ମରୁ କଣା । ଖଇରୀ ସଂସ୍ପର୍ଶରେ ଆସି ହାଏନାଟି ହୁଏତ ଟିକିଏ ସାହସୀ ହୋଇଯାଇଥିଲା । କାରଣ 'ଖଇରୀ' ବାଘୁଣୀକୁ ଯେତେବେଳେ ମାଂସ ଖାଇବାକୁ ଦିଆଯାଏ, ସେତେବେଳେ ଭାଇନା ଆସି ପୂଳାଏ ମାଂସ ଛଡ଼ାଇ ନେବାକୁ ପହଞ୍ଚିଯାଏ । କିନ୍ତୁ ଖଇରୀ ଟିକିଏ ହୁରୁଡ଼େଇ ଦେଲେ ଭୟରେ ଦଉଡ଼ି ପଳାଏ । ପୁଣି କିଛି ସମୟ ପରେ ଆସି ସେଠି ପହଞ୍ଚିଯାଏ । ମାଂସ ଖାଇବା ଆଶାରେ ନସର ପସର ହେଉଥାଏ । କାଳେ ମାଂସ ଟୁକୁରାଏ ମିଳିଯିବ । ଏମାନଙ୍କୁ

ସହଜରେ ପୋଷା ମନାଯାଇ ପାରେ । ବଡ଼ ହୋଇଗଲାପରେ ମଧ୍ୟ ସେମାନେ ଶାନ୍ତଶିଷ୍ଟ ଓ ବିଶ୍ୱସ୍ତ ରହନ୍ତି ।

ହାଏନା ମୁଖ୍ୟତଃ ରାତ୍ରୀଚର । ଦିନସାରା ଘାସବଣ, ବୁଦା ଭିତରେ ଛପି ରହେ । ରାତ୍ରୀ ହେଲେ ଖାଦ୍ୟର ସଂଧାନରେ ବାହାରି ପଡ଼େ ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ନିଜ ଆଶ୍ରୟସ୍ଥଳୀକୁ ଫେରିଆସେ । ରାତ୍ରୀଚର ହୋଇଥିବାରୁ ହାଏନା ଛୁଆମାନଙ୍କର ମଧ୍ୟ ସକାଳ ଅପେକ୍ଷା ମୁହଁ ସଂଜ ବେଳକୁ ସାହସ ବଢ଼ିଯାଇଥାଏ । ଅନେକ ସମୟରେ ଏକାଏକା ଅଥବା ହଳହଳ ହୋଇ ଖାଦ୍ୟ ସଂଧାନରେ ସେମାନେ ବାହାରି ପଡ଼ନ୍ତି । ଖାଦ୍ୟ ଖୋଜି ଖୋଜି ମାଇଲ୍ ମାଇଲ୍ ବାଟ ଚାଲିଯାଆନ୍ତି । ଯେ କୌଣସି ମଲାଜୀବ ଯେତେ ପଚିସଢ଼ି ଯାଇଥିଲେ ମଧ୍ୟ ସେମାନେ ଖାଇଥାନ୍ତି । ଦୁଇଟି ହାଏନା ଗୋଟିଏ ମଢ଼କୁ ଖାଉଥିଲାବେଳେ ଏପରି ଗର୍ଜନ ତର୍ଜନ କରନ୍ତିଯେ, ରାତିରେ ଶୁଣିଲେ ଦେହ ଭୟରେ କମ୍ପି ଉଠେ । ବେଳେ ବେଳେ ଧୀରେ ସୁସ୍ଥେ ଏବଂ ନିରାପଦରେ ଖାଇବା ପାଇଁ ମଢ଼ର କିଛି ଅଂଶ କିମ୍ବା ପଞ୍ଜରା ହାଡ଼କୁ ସେମାନେ ନିଜର ଆଶ୍ରୟ ସ୍ଥଳୀନିକଟକୁ ଟାଣିନିଅନ୍ତି । ଏଥିପାଇଁ ହାଏନା ରହୁଥିବା ଗୁମ୍ଫା ଚାରିପଟେ ହାଡ଼ ଆଦି ବିଛେଇ ହୋଇ ପଡ଼ିଥାଏ । ଖାଦ୍ୟ ସଂଗ୍ରହରେ ବିଲୁଆ ଓ ଶାଗୁଣା ଏମାନଙ୍କର ପ୍ରତିଦ୍ୱନ୍ଦୀ । କିନ୍ତୁ ଶାଗୁଣା ଦିନରେ ଆହାର ସଂଗ୍ରହ କରୁଥିବାରୁ ହାଏନା ସହିତ ତାର ଭେଟ ହେବାର ସଂଭାବନା ନଥାଏ ।

ବସ୍ତୁତଃ ଖାଦ୍ୟପାଇଁ ମଲା ଜୀବଜନ୍ତୁ ଉପରେ ନିର୍ଭର କରୁଥିଲେହେଁ, ବେଳେବେଳେ ହାଏନା ମେଣ୍ଢାଟିଏ ବା ଛେଳିଟିଏ ଦେଖିଲେ ଉଠେଇ ନେଇଥାଏ । ଦେଶର କେତେକ ଅଞ୍ଚଳରେ ମଣିଷ ଛୁଆଙ୍କୁ ଉଠେଇ ନେଉଥିବାର ଦୋଷାରୋପ ମଧ୍ୟ ହାଏନା ଉପରେ କରାଯାଇଥାଏ । ଅନେକ ମନେ କରନ୍ତି,

ହାଏନା ବିଶେଷତଃ ମଲା ଜୀବଜନ୍ତୁ ଖାଉଥିବାରୁ, ହୁଏତ କାଁ ଭାଁ ଭୋକ ବିକଳରେ ମଣିଷ ପିଲାଙ୍କୁ ଉଠେଇ ନେଇ ମାରି ଦେଇଥାଇପାରେ । କିନ୍ତୁ କ୍ରମାଗତ ଭାବେ 'ହାଏନା' ମଣିଷ ପିଲା ଉଠେଇ ନେଉଥିବା ଘଟଣା କେମିତି ଅଜବ ମନେହୁଏ । ଅନ୍ୟ କେତେକଙ୍କ ମତରେ ପିଲାମାରିବା କାମ ହାଏନା ଓ ଗଧିଆ ଔରସରୁ ଜାତ 'ରାମଣିଆଳ' ନାମକ ଏକ ଜନ୍ତୁର କାର୍ଯ୍ୟ । ଯାହା ହେଲେବି, ପ୍ରତିବର୍ଷ ଏହି ଆଳରେ ଅନେକ ହାଏନାଙ୍କୁ ନିର୍ବିଚାରରେ ମାରି ଦିଆଯାଏ । ଏହା ଛଡ଼ା, ଘଞ୍ଚ ଅରଣ୍ୟ ଭିତରେ ନରହି, ଖୋଲା ଜଙ୍ଗଲ, ବୁଦୁବୁଦୁକିଆ ଜଙ୍ଗଲ ବା ଗାଁ ପାଖାପାଖିରେ ହାଏନା ରହେ । ଜଙ୍ଗଲ ସଫା ହେବା ସଂଗେ ସଂଗେ ଏମାନଙ୍କର ସଂଖ୍ୟା କମିବାରେ ଲାଗିଛି । ଏକଦା ଭାରତର ବିସ୍ତୃତ ଶୁଷ୍କ ପତ୍ରଝଡ଼ା ଜଙ୍ଗଲରେ ସର୍ବତ୍ର ହାଏନା ଦେଖିବାକୁ ମିଳୁଥିଲେ କିନ୍ତୁ ଏବେ ନିର୍ଦ୍ଦିଷ୍ଟ କେତେକ ସ୍ଥାନରେ ସେମାନଙ୍କର ସଂଖ୍ୟା ସୀମିତ ।

ହାଏନାର ପାରିବାରିକ ଜୀବନ ବିଷୟରେ ବିଶେଷ ତଥ୍ୟ ସଂଗ୍ରହ କରାଯାଇ ପାରିନାହିଁ । କାରଣ ସେ ବିଶେଷତଃ ରାତ୍ରୀଚର, ଲାଜକୁଳା ଏବଂ ପଳାୟନପନ୍ଥୀ ଅଟେ । ଅନେକ ସମୟରେ ଅଣ୍ଡିରା ଓ ମାଈ ହାଏନା ଯୋଡ଼ି ହୋଇ ବୁଲୁଥିବାର ଦେଖାଯାନ୍ତି । କିନ୍ତୁ ସେମାନଙ୍କର ନିର୍ଦ୍ଦିଷ୍ଟ ପ୍ରଜନନ ଋତୁ ବିଷୟରେ ସଠିକ୍ କିଛି କହି ହେବନାହିଁ । ଥରକେ ତିନି, ଚାରୋଟି ଛୁଆ ଜନ୍ମ ହୁଅନ୍ତି । ଜନ୍ମ ହେଲାବେଳକୁ ଛୁଆଟିର ଆଖି ଓ କାନ ବନ୍ଦ ଥାଏ । ଦେହସାରା ଚିକ୍କଣ ଧଳା ଲୁମ । ସାଧାରଣତଃ ମାଆ ହାଏନାହିଁ ଛୁଆମାନଙ୍କର ଯତ୍ନ ନିଏ । ତିନିମାସର ହେଲାଯାଏ, ଛୁଆମାନେ ମାଆ ଦୁଧ ଖାଇ ବଞ୍ଚନ୍ତି । ତା'ପରେ ଆସ୍ତେ ଆସ୍ତେ ସେମାନଙ୍କୁ ପାକସ୍ଥଳୀ, ଅନ୍ତନଳୀର ମାଂସ ଓ ନରମ ହାଡ଼ ଖାଇବାକୁ ଦିଆଯାଏ ।

ସ୍ୱଭାବତଃ ଲାଜକୁଳା ହୋଇଥିଲେବି ସମୟେ ସମୟେ ଖାଦ୍ୟପାଇଁ ହାଏନା ସାହସର ସହିତ ବଡ଼ ଜନ୍ତୁଙ୍କର ସାମନା କରିଥାଏ । ମଢ଼ ଉପରେ ବସିଥିଲାବେଳେ, ଚିତାବାଘକୁ ମଧ ସେ ଘଉଡ଼େଇ ଦେବାର ଦୃଷ୍ଟାନ୍ତ ଅଛି । କିନ୍ତୁ ଏମିତି କାଁ ଭାଁ ପରିସ୍ଥିତି ଛଡ଼ା ହାଏନା ଲଢ଼େଇ ଝଗଡ଼ାର ପକ୍ଷପାତୀ ନୁହେଁ । ବେଳେବେଳେ ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବାର ସଂଭାବନା ନଦେଖିଲେ, ହାଏନା ମୃତ ଜୀବ ଭଳି ହଲଚଲ୍ ନହୋଇ ଛଳନା କରି ପଡ଼ି ରହେ । ଆକ୍ରମଣକାରୀ ଜୀବଟି ତାକୁ ମରି ଯାଇଛି ବୋଲି ଭାବି ଛାଡ଼ି ଚାଲିଗଲା ପରେ ସେ ଉଠି ଦଉଡ଼ି ପଳାଏ ।

ହାଏନା ଆବର୍ଜନା ସଫାକାରୀ ଜନ୍ତୁ । ଗାଁ ନିକଟରେ ବସବାସ କରୁଥିଲେ, ସେ ଗାଁ ଚାରିପଟର ପରିବେଶକୁ ନିର୍ମଳ ରଖିବାରେ ସହାୟକ ହୋଇଥାଏ । ଭାରତର କେତେକ ଅଞ୍ଚଳରେ 'ହାଏନା'ର ଜିଭ ଓ ମାଂସ ଔଷଧ ରୂପେ ବ୍ୟବହାର କରାଯାଏ । ହାଏନାର ଜିଭକୁ ଟ୍ୟୁମର ଓ ଫୁଲା କମାଇବା ପାଇଁ ଏବଂ ମାଂସକୁ ଆଣ୍ଠୁ ଗଣ୍ଠି ବାତର ଔଷଧ ରୂପେ କେତେକ ଲୋକ ବ୍ୟବହାର କରନ୍ତି ବୋଲି ଶୁଣାଯାଏ । ଏହି ଜୀବଗୁଡ଼ିକ ସାଧାରଣତଃ ୧୨ ବର୍ଷରୁ ୨୪ବର୍ଷ ବଞ୍ଚି ରହନ୍ତି ।





# ହାତୀ

ମାଆମାନେ ଛୋଟ ଛୁଆମାନଙ୍କୁ ଦୋଳିରେ ଝୁଲାଇ ଶୁଆଇଲାବେଳେ ଗୀତ ଗାଆନ୍ତି :-

"ହାତୀ ଝୁଲଇରେ
କିଆକନ୍ଦା ଖାଇ ଫୁଲରେ ।"

ସ୍ଥଳଚର ପ୍ରାଣୀମାନଙ୍କ ଭିତରେ ହାତୀ ସବୁଠାରୁ ବୃହଦାକାୟ ପ୍ରାଣୀ । ଆମ ଦେଶରେ ଏହି ଜନ୍ତୁଟି ଖୁବ୍ ଜନପ୍ରିୟ ଏବଂ ପବିତ୍ର ପ୍ରାଣୀରୂପେ ପରିଗଣିତ ହୋଇଥାଏ । ଧନର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀଙ୍କର ସହଚରରୂପେ ସେ ସମ୍ମାନିତ । ଇନ୍ଦ୍ରଙ୍କର ବାହନ ଐରାବତ ହସ୍ତୀ କଥା ମଧ ପୁରାଣରେ ଉଲ୍ଲେଖ ଅଛି । ଗାଁ ଗହଳିରେ କଥିତ ଅଛି, 'ଇନ୍ଦ୍ରରାଜା ସନ୍ତୁଷ୍ଟ ହେଲେ ଐରାବତ ହାତୀ ଶୁଣ୍ଢରେ ପାଣି ଢ଼ାଳି' ବର୍ଷା କରେଇଥାଏ । ପୁରାଣ ବ୍ୟତୀତ କାବ୍ୟକବିତାରେ କବିମାନେ ମଧ୍ୟ ଉପମା, ଉପମାନରୂପେ ହାତୀକୁ ବ୍ୟବହାର କରିଥାନ୍ତି । ସ୍ତ୍ରୀମାନଙ୍କର ଚାଲିକୁ ହାତୀର ଚାଲି ସହିତ ତୁଳନାକରି ସେମାନଙ୍କୁ ଗଜଗମନା ବା କରୀନ୍ଦ୍ର

ଗମନା ବୋଲି କୁହାଯାଏ । ସୁନ୍ଦରୀ ନାରୀମାନଙ୍କର ବାହୁକୁ ଓ ଜଙ୍ଘକୁ ହାତୀର ଶୁଣ୍ଢ ସଙ୍ଗେ ମଧ୍ୟ ତୁଳନା କରାଯାଏ । ଗଣନାୟକ ଗଣେଶଙ୍କର ମୁହଁଟି ହାତୀ ମୁହଁ ହୋଇଥିବାରୁ ତାଙ୍କୁ ଗଜାନନ କୁହାଯାଏ । ଗଜ, କରୀ, କୁଞ୍ଜର ଇତ୍ୟାଦି ବହୁ ନାମରେ ହାତୀ ପରିଚିତ ।

## ବିସ୍ତୃତି :-

ଦକ୍ଷିଣରେ ପଶ୍ଚିମଘାଟ ପର୍ବତମାଳା, ମହୀଶୂର, ତାମିଲନାଡୁ ଓ କେରଳ ରାଜ୍ୟ ଏବଂ ଉତ୍ତରରେ ଓଡ଼ିଶା, ପଶ୍ଚିମବଙ୍ଗ, ବିହାର, ଆସାମ ଉତ୍ତରପ୍ରଦେଶ ଓ ହିମାଳୟ ପାଦଦେଶର ତରାଇ ଅଞ୍ଚଳରେ ହାତୀ ଦେଖାଯାଇଥାଆନ୍ତି । ଆମ ଦେଶ ବ୍ୟତୀତ ସିଂହଳ, ବ୍ରହ୍ମଦେଶ, ମାଳୟ, ଶ୍ୟାମ, ବୋର୍ଣ୍ଣିଓ, ସୁମାତ୍ରା ଦ୍ୱୀପପୁଞ୍ଜ ଓ ଥାଇଲାଣ୍ଡ ପ୍ରଭୃତି ଦେଶରେ ମଧ୍ୟ ହାତୀ ଦେଖିବାକୁ ମିଳନ୍ତି ।

ସାଧାରଣତଃ ବହୁ ପରିମାଣରେ ବାଉଁଶଗଛ ଜନ୍ମିଥିବା ଘନଜଙ୍ଗଲରେ ହାତୀମାନେ ବସବାସ କରନ୍ତି । ଆମ ଓଡ଼ିଶାର ଶିମିଳିପାଳ ଅରଣ୍ୟ, ରାୟଗଡ଼ା ରେଢ଼ାଖୋଲ, ଚନ୍ଦ୍ରକା ଓ ଫୁଲବାଣୀ, କୋରାପୁଟ ଓ କଳାହାଣ୍ଡି ଜିଲ୍ଲାର ସମସ୍ତ ଅରଣ୍ୟରେ ହାତୀ ଅଛନ୍ତି ।

## ଆକୃତି ଓ ରଙ୍ଗ :-

ବିଶାଳକାୟ ଚେହେରା, ସୁଦୀର୍ଘ ଶୁଣ୍ଢ ଓ ଥୋଡ଼ପାହାଡ଼, କୁଲାପରି କାନ ଏବଂ ପାଟି ବାହାରକୁ ବାହାରିଥିବା ଦୁଇଟି ବଡ଼ବଡ଼ ଦାନ୍ତ ହାତୀ ଚେହେରାର ବିଶେଷତ୍ୱ ଅଟେ । ସାଧାରଣତଃ ମାଈ ହାତୀମାନଙ୍କର ବଡ଼ବଡ଼ ଦାନ୍ତ ନଥାଏ । ତାକୁ 'ମଖନା' କୁହାଯାଏ । 'ମଖନା' ଗୁଡ଼ିକ ଭୀଷଣ ବଦ୍‌ରାଗୀ ଓ ଏକୁଟିଆ ମଣିଷକୁ ଦେଖିଲେ ଆକ୍ରମଣ କରିଥାନ୍ତି ।

ଆମ ଦେଶର ହାତୀ ଆଫ୍ରିକାର ହାତୀ ତୁଳନାରେ ଛୋଟ । ଆଫ୍ରିକୀୟ ହାତୀର ଓଜନ ସାତ ଟନ ଓ ହାରାହାରି ଉଚ୍ଚତା ଦଶ ଫୁଟ ଅଟେ । କିନ୍ତୁ ଆମ ଦେଶ ହାତୀର ଓଜନ ଛଅ ଟନ୍ ଅଟେ । କାନଗୁଡ଼ିକ ଦେଖିବାକୁ ବଡ଼ବଡ଼ କୁଲାପରି । ଗୋଡ଼ଗୁଡ଼ିକ ସୁଦୃଢ଼, ସଳଖ ଓ ଖମ୍ବପରି ଶକ୍ତ । ହାତୀର ଆଗଗୋଡ଼ର ପାଦ ଚିହ୍ନକୁମାପି ତା'ର ଉଚ୍ଚତା ମଧ୍ୟ ନିରୂପଣ କରାଯାଇପାରେ ।

ପାଦଚିହ୍ନର ପରିଧିକୁ ଇଞ୍ଚରେ ମାପି ତାର ଅଧା ନିଆଗଲେ, ଯେତିକି ଇଞ୍ଚ ହେଲା, ହାତୀର ଉଚ୍ଚତା ସେତିକି ଫୁଟ ଅଟେ ।

୧/୨ x (ପାଦ ଚିହ୍ନର ପରିଧି) ଇଞ୍ଚରେ= ହାତୀର ଉଚ୍ଚତା ଫୁଟରେ ।

ମାଈ ହାତୀର ଉଚ୍ଚତା, ପୁରୁଷ ହାତୀଠାରୁ ଅପେକ୍ଷାକୃତ ଏକ ଫୁଟ କମ୍ । ଶରୀର ତୁଳନାରେ ଆଖିଗୁଡ଼ିକ ଖୁବ୍ ଛୋଟଛୋଟ । ଦେହର ରଙ୍ଗ ଧୂସର, ପାଉଁଶିଆ ଏବଂ ଫିକା କଳା । ଗଣ୍ଡାପରି ହାତୀର ଚମଡ଼ା ମଧ୍ୟ ମୋଟା ।

ହାତୀର ଦାନ୍ତ ଦୁଇଟି ଲମ୍ବା ଓ ଶକ୍ତ ଏବଂ ଖୁବ୍ ମୂଲ୍ୟବାନ ମଧ୍ୟ । ଗୋଟିଏ ଗୋଟିଏ ହାତୀ ଦାନ୍ତର ଲମ୍ବ ନଅ ଫୁଟ ପର୍ଯ୍ୟନ୍ତ ହୋଇପାରେ । ଦାନ୍ତଗୁଡ଼ିକର ଓଜନ ହାରାହାରି ପନ୍ଦରରୁ କୋଡ଼ିଏ କିଲୋଗ୍ରାମ ଅଟେ । ଏକ କିଲୋଗ୍ରାମ ଓଜନର ହାତୀଦାନ୍ତର ଦାମ୍ ପାଞ୍ଚଶହରୁ ଏକହଜାର ଟଙ୍କା ପର୍ଯ୍ୟନ୍ତ ହୋଇପାରେ । ଏହି ମୂଲ୍ୟବାନ ହାତୀଦାନ୍ତ ଲୋଭରେ ବେଳେବେଳେ ଶିକାରୀମାନେ ହାତୀକୁ ମାରିଦେଇଥାଆନ୍ତି । କଥିତ ଅଛି, ''ହାତୀ ବଞ୍ଚିଲେ ଲକ୍ଷେଟଙ୍କା, ଏବଂ ମଲେ ମଧ୍ୟ ଲକ୍ଷେ ଟଙ୍କା ।''

ହାତୀର ଶୁଣ୍ଢ ତା'ପାଇଁ ହାତର କାମ ଦେଇଥାଏ । ଶୁଣ୍ଢଦ୍ୱାରା ନିଃଶ୍ୱାସ ପ୍ରଶ୍ୱାସ ନେବା ବ୍ୟତୀତ ତାଳପତ୍ର ଭାଙ୍ଗି ଖାଇବା, କାଠ ଇତ୍ୟାଦି ବହନ କରିବା, ଜଳପାନ କରିବା ଏବଂ ନିଜ ଦେହକୁ ପାଣି ଛାଟିବା ଇତ୍ୟାଦି କାର୍ଯ୍ୟ ମଧ୍ୟ କରିଥାଏ । ଶୁଣ୍ଢ ଦ୍ୱାରା ସେ ନିଜକୁ ଶତ୍ରୁ ଆକ୍ରମଣରୁ ରକ୍ଷାକରେ ।

## ଆଚାର ବ୍ୟବହାର :-

ବଡ଼ବଡ଼ ଗଛଲତା ଓ ବହୁପରିମାଣରେ ବାଉଁଶ ଗଛ ଥିବା ଘନଜଙ୍ଗଲରେ ହାତୀମାନେ ବସବାସ କରନ୍ତି । ନିକଟରେ ସେମାନଙ୍କପାଇଁ ପ୍ରଚୁର ପିଇବା ପାଣିର ସୁବିଧା ମଧ୍ୟ ଥିବା ଦରକାର । ଗ୍ରୀଷ୍ମ ଋତୁରେ ଜଳର ଅଭାବ ହେଲେ ସେମାନେ ଦଳଦଳ ହୋଇ ଘନ ଅରଣ୍ୟ ଭିତରକୁ ଯେଉଁଠି ଜଳର ସୁବିଧା ଥାଏ, ସେଠାକୁ ଚାଲିଯାନ୍ତି । ପୁଣି ଯେତେବେଳେ ବର୍ଷାଋତୁ ଆସେ, ସେମାନେ ଖୋଲାସ୍ଥାନକୁ ବାହାରିଆସନ୍ତି ଓ ଚାଷ ଜମିରେ ପଶି ଫସଲ ନଷ୍ଟ କରିଦିଅନ୍ତି ।

ପରିସ୍ଥିତି ସହିତ ଖାପ ଖୁଆଇ ଚଳିବାରେ ଏମାନେ ଧୁରନ୍ଧର । ଏଥିପାଇଁ ସେମାନେ ଆର୍ଦ୍ର ଜଙ୍ଗଲ କିମ୍ବା ଥଣ୍ଡା ଘନ ଜଙ୍ଗଲ ଭିତରେ ରହିପାରନ୍ତି ।

ଯେତେଦିନ ପର୍ଯ୍ୟନ୍ତ ସେମାନଙ୍କ ପ୍ରତି କୌଣସି ବିପଦ ଦେଖା ଦେଇନଥାଏ, ସେତେଦିନଯାଏଁ ସେମାନେ ନିୟମିତଭାବେ ସେମାନଙ୍କର କାମ କରୁଥାନ୍ତି ଅର୍ଥାତ୍ ନିର୍ଦ୍ଦିଷ୍ଟ ସ୍ଥାନରେ ପାଣି ପିଅନ୍ତି, ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ଖାଦ୍ୟ ସଂଗ୍ରହ କରନ୍ତି ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ବିଶ୍ରାମ ନିଅନ୍ତି । ହାତୀମାନେ ଖରାବେଳେ ସଂପୂର୍ଣ୍ଣ ବିଶ୍ରମ ନିଅନ୍ତି । ସକାଳେ ଓ ସଞ୍ଜବେଳେ ଖାଦ୍ୟ ସଂଗ୍ରହ କରିଥାନ୍ତି । ବେଳେବେଳେ ମୁହଁ ଅନ୍ଧାର ହୋଇଗଲା ପରେ ସେମାନେ ଖୋଲା ଜଙ୍ଗଲରେ ଖାଦ୍ୟ ସଂଗ୍ରହ କରିବାକୁ ବାହାରିପଡ଼ନ୍ତି କିମ୍ବା ଜନବସତି ନିକଟବର୍ତ୍ତୀ ଚାଷଜମିରେ ପଶି ଫସଲ ଖାଇଯାଆନ୍ତି । ହାତୀମାନଙ୍କର ଖାଦ୍ୟ ହୋଉଛି ଘାସ, ପତ୍ର, ବାଉଁଶ ଓ କଦଳୀ ଗଛର ପତ୍ର, ବର ଓ ଓସ୍ତ ଗଛର ଡାଳ ଏବଂ କଅଁଳିଆ କରଡ଼ି ବା ଗଜାବାଉଁଶ ଖାଇବାକୁ ସେମାନେ ଖୁବ୍ ଭଲପାଆନ୍ତି । ବେଳେବେଳେ

ପଲେ ହାତୀ ପଶି ଗୋଟିଏ ବାଉଁଶ ଜଙ୍ଗଲ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିବାର ଦେଖାଯାଏ । ଗୋଟିଏ ପୂର୍ଣ୍ଣାଙ୍ଗ ବୟସର ହାତୀ ଦିନକୁ ୨୭୦ରୁ ୩୦୦କିଲୋଗ୍ରାମ ଓଜନର ଘାସପତ୍ର ଖାଏ ଏବଂ ତା' ସାଙ୍ଗକୁ ପ୍ରଚୁର ପାଣି ମଧ୍ୟ ପିଏ ।

ହାତୀମାନଙ୍କର ଦୃଷ୍ଟିଶକ୍ତି କ୍ଷୀଣ; କିନ୍ତୁ ସେମାନଙ୍କର ଆଘ୍ରାଣ ଶକ୍ତି ଖୁବ୍ ପ୍ରଖର ହେତୁ ଅତିଶୀଘ୍ର ଶବ୍ଦ ବାରିପାରନ୍ତି । ହାତୀ ବସବାସ କରୁଥିବା ଜଙ୍ଗଲକୁ କାମକରିବାପାଇଁ ଗଲାବେଳେ ଫରେଷ୍ଟ ଅଫିସରମାନଙ୍କୁ ଧଳା ପୋଷାକ ପିନ୍ଧି ଯିବାପାଇଁ ବାରଣ କରାଯାଇଥାଏ । କାରଣ ଧଳା ପୋଷାକ ଶୀଘ୍ର ହାତୀର ଦୃଷ୍ଟି ଆକର୍ଷଣ କରିଥାଏ; କିନ୍ତୁ ମାଟିଆ ବା ଧୂସର ରଙ୍ଗର ପୋଷାକକୁ ହାତୀ ସହଜରେ ଉଠେଇ ପାରେନାହିଁ ।

ଜଙ୍ଗଲରେ ହଠାତ୍ ବାଘ ହାବୁଡ଼ରେ ପଡ଼ିଲେ ଶିଘ୍ର ଦଉଡ଼ିଯାଇ ଉଚ୍ଚା ଗଛରେ ଚଢ଼ିଗଲେ ବାଘଠାରୁ ରକ୍ଷା ପାଇହୁଏ । କାରଣ ବାଘ ସାଧାରଣତଃ ଗଛ ଚଢ଼ିପାରେ ନାହିଁ; କିନ୍ତୁ ହାତୀ ଆକ୍ରମଣରୁ ରକ୍ଷା ପାଇବାପାଇଁ ଗଛରେ ଚଢ଼ିଗଲେ ମଧ୍ୟ କିଛି ଲାଭ ହେବ ନାହିଁ । ହାତୀ ଏତେ ବଳବାନ ଓ ଶକ୍ତିଶାଳୀ ଯେ, ସେ ଶୁଣ୍ଢ ଓ ଗୋଡ଼ ସାହାଯ୍ୟରେ ସଂପୂର୍ଣ୍ଣ ଗଛଟିକୁ ଓପାଡ଼ିଦିଏ ।, ଜଙ୍ଗଲରେ ହାତୀ ଆକ୍ରମଣରୁ ରକ୍ଷାପାଇବାର ଗୋଟିଏ ଉପାୟ ହେଲା, ପାହାଡ଼ ଉପରୁ ତଳ ଆଡ଼କୁ ରାସ୍ତାରେ ନ ଦୌଡ଼ି ସିଧାସଳଖ ଗଡ଼ାଣିଆରେ ଦୌଡ଼ିବାକୁ ହେବ । ହାତୀ ଗଡ଼ାଣିଆ ରାସ୍ତାରେ ଶୀଘ୍ର ଦୌଡ଼ିପାରେ ନାହିଁ ।

ହାତୀ ଖୁବ୍ ସନ୍ତରଣପଟୁ । ତା'ଛଡ଼ା ଅଳ୍ପ ଗଭୀର ପାଣିରେ ଛିଡ଼ାହୋଇ ଗାଧୋଇବାକୁ ଏବଂ ଶୁଣ୍ଢ ସାହାଯ୍ୟରେ ନିଜଉପରକୁ ପାଣି ଛାଡ଼ି ଦେହକୁ ଥଣ୍ଡା କରିବାକୁ ଖୁବ୍ ଭଲ ପାଏ ।

## ପାରିବାରିକ ଓ ସାମାଜିକ ଜୀବନ :-

ହାତୀମାନେ ସାଧାରଣତଃ ଦଳବାନ୍ଧି ରହିବାକୁ ଭଲ ପାଆନ୍ତି । ଗୋଟିଏ ଗୋଟିଏ ଦଳରେ ପଚାଶ, ଷାଠିଏ ବା ତହିଁରୁ ଅଧିକ ହାତୀଥାଆନ୍ତି । ପ୍ରତ୍ୟେକ ଦଳରେ ବିଭିନ୍ନ ବୟସର ତଥା ବିଭିନ୍ନ ଉଚ୍ଚତାର ହାତୀଥିବାର ଦେଖାଯାଏ । ଗୋଟିଏ ଦଳ ସାଧାରଣତଃ ଗୋଟିଏ ଗୋଟିଏ ପରିବାରକୁ ନେଇ ଗଠିତ । ଗୋଟିଏ ଦଳ, ଅନ୍ୟ ଦଳ ସହିତ ମିଶେ ନାହିଁ । ଯେତେବେଳେ ସେମାନଙ୍କୁ ଖାଦ୍ୟ ଅଭାବ ପଡ଼େ, ସେମାନେ ଏହି ବଡ଼ଦଳକୁ ଭାଙ୍ଗିଦେଇ ଛୋଟ ଛୋଟ ଦଳରେ ବିଭକ୍ତ ହୋଇଯାଆନ୍ତି ଏବଂ ଅନୁକୂଳ ଅବସ୍ଥା ଫେରିଆସିଲେ ପୁନର୍ବାର ଏକତ୍ରୀତ ହୋଇଥାଆନ୍ତି । ତସ୍କର ବା ଦନ୍ତାହାତୀ ସବୁବେଳେ ଗୋଠଛଡ଼ା ହୋଇ ଦଳଠାରୁ ଦୂରରେ ବୁଲୁଥିବାର ଦେଖାଯାଏ । ପୁରୁଷ ହାତୀ ଗୋଟିଏ ନିର୍ଦ୍ଦିଷ୍ଟ ବୟସରେ ପହଞ୍ଚିଲାପରେ ଏକୁଟିଆ ରହିବାକୁ ଭଲପାଏ । ତେବେ ଦଳରେ ଥିବା ମାଈହାତୀ ସହିତ ସହବାସ ଉଦ୍ଦେଶ୍ୟରେ ସେ ବେଳେବେଳେ ଦଳକୁ ଫେରିଆସିଥାଏ ।

ଦଳବଦ୍ଧହୋଇ ପରିବାର ସହିତ ବୁଲୁଥିବା ହାତୀମାନେ ସାଧାରଣତଃ ମଣିଷକୁ ଦେଖିଲେ ଆକ୍ରମଣ କରନ୍ତି ନାହିଁ । ଗୋଟିଏ ସ୍ଥାନରେ କିଛି ସମୟ ଅପେକ୍ଷାକରି ଛିଡ଼ା ହୋଇଗଲେ ସେମାନେ ବାଟଭାଙ୍ଗି ଚାଲିଯାଇଥାନ୍ତି; କିନ୍ତୁ ଗୋଠଛଡ଼ା ତସ୍କର ବା ଦନ୍ତାହାତୀ ମଣିଷକୁ ଦେଖିଲେ ଆକ୍ରମଣ କରିଥାଏ ।

ହାତୀମାନଙ୍କର ନିର୍ଦ୍ଦିଷ୍ଟ ପ୍ରଜନନ ସମୟ ନେଇ କିଛି ଜଣାନାହିଁ । ତେବେ ସାଧାରଣତଃ ଶରତ ଋତୁରେ ହିଁ ହାତୀ ଛୁଆ ଜନ୍ମ ହେବାର ଦେଖାଯାଏ । ଏଥିରୁ ଅନୁମାନ କରାଯାଏ ଯେ, ସାଧାରଣତଃ ଉତ୍ତପ୍ତ ଗ୍ରୀଷ୍ମଋତୁ ଓ ବର୍ଷାଋତୁର ପ୍ରାରମ୍ଭରେ ହିଁ ହାତୀମାନେ ପ୍ରଜନନ କ୍ରିୟାରେ ଲିପ୍ତ ରହନ୍ତି ।

ପୁରୁଷ ହାତୀର ଯୌବନାବସ୍ଥାରେ ସ୍ୱାଭାବିକ ଉତ୍ତେଜନା ଦେଖାଦେଲେ, ତାହାର କାନ ଓ ବେକମୂଣ୍ଡାରୁ ଏକ ପ୍ରକାର ଅଠାଳିଆ ରସ ନିର୍ଗତ ହୁଏ । ଏହା ତା'ର ଯୌନ ଆକାଂକ୍ଷାର ଲକ୍ଷଣ । ଏହି ସମୟରେ ହାତୀକୁ 'ମସ୍ତ' ବା ମତଙ୍ଗ କୁହାଯାଏ । ଏହି ଅବସ୍ଥା ଘଟିଲେ ପୁରୁଷହାତୀ ସାଧାରଣତଃ ସ୍ତ୍ରୀ ହାତୀ ସହିତ ସଙ୍ଗମପାଇଁ ଖୋଜିବୁଲେ ।

ମାଈ ହାତୀ ସହବାସ ହେବାର ପ୍ରାୟ କୋଡ଼ିଏ ମାସ ପର୍ଯ୍ୟନ୍ତ ଗର୍ଭଧାରଣ କରିଥାଏ ଏବଂ ଥରକେ ଗୋଟିଏକରି ପିଲା ଜନ୍ମକରେ । ପିଲା ଜନ୍ମକରିଥିବା ମାଈହାତୀକୁ ପିଲାର ରକ୍ଷଣାବେକ୍ଷଣପାଇଁ ସାଧାରଣତଃ ଆଉ ଗୋଟିଏ ମାଈହାତୀ ସାହାଯ୍ୟ କରିଥାଏ ।

ଉତ୍ତେଜିତ ଥିଲାବେଳେ ଅର୍ଥାତ୍ 'ମସ୍ତ' ଅବସ୍ଥାରେ ଥିବାବେଳେ ଦୁଇଟି ପୁରୁଷହାତୀ ଗୋଟିଏ ମାଈହାତୀ ପାଇଁ ଲଢ଼ାଲଢ଼ି ହେବାର ଦେଖିବାକୁ ମିଳେ । ଯୁଦ୍ଧବେଳେ ସେମାନେ ଶୁଣ୍ଢ ଓ ଦାନ୍ତକୁ ବ୍ୟବହାର କରିଥାଆନ୍ତି ।

**ଶେଷକଥା :-**

ଆଗ କାଳରେ ଯେତେବେଳେ ଟ୍ରକ୍, ଟ୍ରାକ୍ଟର ଇତ୍ୟାଦି ବାହାରି ନଥିଲା, ସେତେବେଳେ ବଡ଼ବଡ଼ ଜିନିଷମାନ ବୋହିବା ପାଇଁ ହାତୀର ସାହାଯ୍ୟ ନିଆଯାଉଥିଲା । ଏବେ ମଧ୍ୟ କେରଳ ଓ ମହାରାଷ୍ଟ୍ରର ଘନ ପାର୍ବତ୍ୟ ଅଞ୍ଚଳରୁ ବଡ଼ ବଡ଼ କାଠ ଗଣ୍ଡିମାନ ସମତଳ ଅଞ୍ଚଳକୁ ବୋହି ଆଣିବାପାଇଁ ହାତୀମାନଙ୍କୁ ବ୍ୟବହାର କରାଯାଉଛି । ବଣୁଆ ହାତୀକୁ ଧରିବା ପାଇଁ ଆଗେ ବିଭିନ୍ନ ଉପାୟର ଖେଦାମାନ ପ୍ରସ୍ତୁତ କରାଯାଉଥିଲା । ଖେଦାରେ ପଡ଼ିବା ପରେ ଗୋଟିଏ ପୋଷା ହାତୀକୁ ସେ ଖେଦୀ ଭିତରକୁ ଛାଡ଼ି ଦିଆଯାଉଥିଲା ଓ ସେ ବଣୁଆ ହାତୀଗୁଡ଼ିକୁ ପୋଷାମନାଉଥିଲା ।

ଆଗ କାଳରେ ରାଜା; ମହାରାଜାମାନେ ହାତୀ ରଖୁଥିଲେ । ଏହା ସେମାନଙ୍କର ଶକ୍ତିର ପ୍ରତୀକ ବୋଲି ବିବେଚିତ ହେଉଥିଲା । ସେନାବାହିନୀରେ ଅଶ୍ୱାରୋହୀ ବାହିନୀ ପରି ଗଜାରୋହୀବାହିନୀ ମଧ୍ୟ ଥିଲା । ପୂର୍ବକାଳରେ ରାଜାମାନେ ହାତୀ ଉପରେ ବସି ଯୁଦ୍ଧ କରୁଥିଲେ । ଆମ ଓଡ଼ିଶାରେ ପୁରୀ ମହାରାଜାଙ୍କର ଅତୀତରେ ଅନେକଗୁଡ଼ିଏ ହାତୀ ଥିବାରୁ ତାଙ୍କୁ ଗଜପତି ଆଖ୍ୟା ଦିଆଯାଇଛି । ଏବେ ବି ପୁରୀର ଗଜପତି ମହାରାଜା ଶ୍ରୀଗୁଣ୍ଡିଚା ଦିନ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥରେ ଛେରାପହଁରା କରିବାକୁ ତାମ୍ରଯାନରେ ବସି ଆସିଲେ ମଧ୍ୟ ଆଗେଆଗେ ହାତୀଟିଏ ଆସୁଅଛି । ବେଳେବେଳେ ରାଜାଙ୍କ ହାତୀ ମଧ୍ୟ ରଥ ଟାଣିବାରେ ସାହାଯ୍ୟ କରିଥାଏ ।

ପ୍ରତ୍ୟେକ ଚିଡ଼ିଆଖାନାରେ ହାତୀ ଉପରେ ବସି ବୁଲିବାର ବ୍ୟବସ୍ଥା ଆଜିକାଲି କରାଯାଇଛି । ଆମ ନନ୍ଦନ କାନନ୍‌ରେ ମଧ୍ୟ ହାତୀ ପୋଷା ଯାଇଛନ୍ତି ।





# ଗଣ୍ଡା

ହାତୀ ସଦୃଶ ଗଣ୍ଡା ଏକ ବୃହତ୍‌କାୟ ପ୍ରାଣୀ । ମୁହଁଟି ଦେଖିବାକୁ ଛୋଟ ଗୋଟିଏ ଡଙ୍ଗାପରି । ନାକ ଉପରେ ଏକ ତ୍ରିକୋଣୀ ଶିଙ୍ଘ । ଗୋଡ଼ଗୁଡ଼ିକ ଅନୁଚ୍ଚ ଅଥଚ ମୋନା ଏବଂ ଶକ୍ତ । ହାଡ଼ ଖୁବ୍ ମଜବୁତ ଏବଂ ନିଦା । ଚର୍ମ ମୋଟା ବା ସ୍ଥୁଳଚର୍ମା । କାନ୍ଧ, ପିଠିର ସାମ୍ନାପଟ ଓ ପଛପଟରେ କୁଞ୍ଚୁକୁଞ୍ଚିଆ ବହଳିଆ ଚମ ଢ଼ାଙ୍କି ରହିଥାଏ । ବୟସ ବଢ଼ିବା ସଙ୍ଗେସଙ୍ଗେ ଚର୍ମରେ ପ୍ରସ୍ଥ ସୃଷ୍ଟି ହୁଏ । ପ୍ରସ୍ଥ ପ୍ରସ୍ଥ ଚର୍ମ ଦେଖିବାକୁ ଢ଼ାଲପରି ପ୍ରତୀୟମାନ ହୁଏ । ପଛପଟ ଫଡ଼ିଆ ଓ କାନ୍ଧ ଉପରେ ଗୋଲାକାର ଗ୍ରନ୍ଥିମାନ ଦେଖିବାକୁ ମିଳେ । ଗଣ୍ଡାକୁ ଦେଖିଲେ ଏକ ପ୍ରାଗ୍‌ଐତିହାସିକ ଜୀବ ରାକ୍ଷସକୁ ଦେଖିଲା ପରି ମନେହୁଏ ।

ଆଫ୍ରିକାର ଧଳାଗଣ୍ଡା ଅପେକ୍ଷା ଆମ ଭାରତୀୟ ଗଣ୍ଡା ଆକାରରେ ଛୋଟ । ଗୋଟିଏ ବୟସ୍କ ଗଣ୍ଡାର ଉଚ୍ଚତା ପାଞ୍ଚ ଫୁଟରୁ ଛଅ ଫୁଟ ଏବଂ ଗୋଲେଇ ଦଶ ଫୁଟରୁ ବାର ଫୁଟ । ଲାଞ୍ଜର ଲମ୍ବ ଦୁଇ ଫୁଟରୁ ଅଢ଼େଇ ଫୁଟ ଅଟେ । ଶରୀରର ଓଜନ ପନ୍ଦରଶହ କିଲୋଗ୍ରାମରୁ ଦୁଇହଜାର କିଲୋଗ୍ରାମ ପର୍ଯ୍ୟନ୍ତ ଅଟେ । ମାଈଗଣ୍ଡା ଓଜନରେ ପୁରୁଷ ଗଣ୍ଡାଠାରୁ ଅପେକ୍ଷାକୃତ କମ୍ ଓ ଆକାରରେ ମଧ୍ୟ ଛୋଟ ।

## ବିସ୍ତୃତି–

ଅତୀତରେ ଆମଦେଶର ସମଗ୍ର ଗାଙ୍ଗେୟ ଉପତ୍ୟକାରେ ବହୁ ସଂଖ୍ୟାରେ ଗଣ୍ଡା ଦେଖିବାକୁ ମିଳୁଥିଲେ । ବର୍ତ୍ତମାନ ଏମାନେ କେବଳ ଆସାମ ଓ ପଶ୍ଚିମବଙ୍ଗର ସୁନ୍ଦରବନ ଅଞ୍ଚଳରେ ଅଛନ୍ତି । ଏତଦ୍ ବ୍ୟତୀତ ନେପାଳର ଗଣ୍ଡକ ନଦୀର ଉପତ୍ୟକାରେ ଓ ବଙ୍ଗଳା ଦେଶରେ ମଧ୍ୟ ଗଣ୍ଡା ଦେଖିବାକୁ ମିଳନ୍ତି । ବର୍ତ୍ତମାନ ଆମ ଦେଶରେ ଗଣ୍ଡାସଂଖ୍ୟା ପ୍ରାୟ ଏକ ହଜାର । ଏଥିମଧ୍ୟରୁ ସାତଶହ ଅଛନ୍ତି ଆସାମର କାଜିରଙ୍ଗା ଜାତୀୟ ଉଦ୍ୟାନରେ ଏବଂ ଅବଶିଷ୍ଟ ତିନିଶହ ଆସାମର ଅନ୍ୟାନ୍ୟ ଅଞ୍ଚଳରେ ଓ ପଶ୍ଚିମ ବଙ୍ଗରେ ଅଛନ୍ତି ।

## ଆହାର ଓ ଆଚର ବ୍ୟବହାର :–

ଗଣ୍ଡା ଏକ ତୃଣଭୋଜୀ ପ୍ରାଣୀ । ଏହି କାରଣରୁ ତୃଣବହୁଳ ସନ୍ତସନ୍ତିଆ ଅଞ୍ଚଳରେ ଏମାନେ ରହନ୍ତି । ଗୋଟିଏ ଗଣ୍ଡା ଦୈନିକ ପ୍ରାୟ ପନ୍ଦର କିଲୋଗ୍ରାମ ପର୍ଯ୍ୟନ୍ତ ଘାସ, କଅଁଳିଆ ବାଉଁଶ କରଡ଼ି ଓ ତାଳପତ୍ର ଖାଇଥାଏ, ଏବଂ ଅଶୀରୁ ଶହେ ଲିଟର ପର୍ଯ୍ୟନ୍ତ ପାଣି ପିଇଥାନ୍ତି । ସମୟେ ସମୟେ ଜଙ୍ଗଲ ନିକଟସ୍ଥ ଚାଷ ଜମିରେ ପଶି ଏମାନେ ଫସଲ ଖାଇଥାନ୍ତି । ଖାଦ୍ୟ ଆହରଣ ଦୃଷ୍ଟିରୁ ଗଣ୍ଡା ହେଉଛି ହାତୀର ପ୍ରତ୍ୟକ୍ଷ ପ୍ରତିଦ୍ୱନ୍ଦୀ ।

ଗଣ୍ଡାମାନେ ସାଧାରଣତଃ ପାଣିଭିତରେ କିମ୍ବା କର୍ଦ୍ଦମାକ୍ତ ସନ୍ତସନ୍ତିଆ ଅଞ୍ଚଳରେ ବିଶ୍ରାମ ନେଇଥାନ୍ତି । ଏହାଦ୍ୱାରା ତାର ସ୍ଥୁଳଚର୍ମ ଉପଯୁକ୍ତ ଅବସ୍ଥାରେ ରହିପାରେ । ଏମାନେ ବିଶେଷ ଭାବେ ସନ୍ତରଣପଟୁ । ପାଣିରେପଶି ଆସାମର ବ୍ରହ୍ମପୁତ୍ର ନଦୀକୁ ଏମାନେ ବାରମ୍ବାର ପାର ହେଉଥିବାର ଦେଖାଯାଏ ।

ଭଲ ରାସ୍ତାରେ ଗଣ୍ଡା କୁଦାମାରି ଘଣ୍ଟାକୁ ତିରିଶରୁ ଚାଳିଶ କିଲୋମିଟର ବେଗରେ ଦଉଡ଼ି ପାରେ ।

କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ମଳତ୍ୟାଗ କରିବା ଗଣ୍ଡାର ଏକ ବିଶେଷ ଲକ୍ଷଣ । ଗଣ୍ଡା ଚରାବୁଲା କରିବାକୁ ଯେତେଦୂରକୁ ଯାଇଥିଲେ ମଧ୍ୟ, ମଳତ୍ୟାଗ କରିବାକୁ ସେଇ ନିର୍ଦ୍ଦିଷ୍ଟ ସ୍ଥାନକୁ ଆସେ । ପ୍ରତିଦିନର ମଳ ଜମିଜମି ଏକ ସ୍ତୂପରେ ପରିଣତ ହୁଏ । ଗାଧୁଆ ତୁଠ କିମ୍ବା ଘାସ ପଡ଼ିଆର ଏକ କୋଣରେ ଏହିଭଳି ମଳଗଦାମାନ ଦେଖିବାକୁ ମିଳେ । ନିଜର ମଳଗଦା ବା ଅନ୍ୟ କାହାର ମଳଗଦା ନିକଟରେ ପହଞ୍ଚିଲା କ୍ଷଣି, ଗଣ୍ଡା ସ୍ୱଭାବ ବଶତଃ ବାଧ୍ୟ ହୋଇ ମଳତ୍ୟାଗ କରିଥାଏ । ଗଣ୍ଡାର ଅନ୍ୟଏକ ଲକ୍ଷଣ ହେଲା, ମଳଗଦା ନିକଟରେ ପହଞ୍ଚିବାର କିଛି ଦୂରରୁ ପଛେଇ ପଛେଇ ଯାଇ ସେ ଗଦା ଉପରେ ମଳତ୍ୟାଗ କରିଥାଏ । ଶିକାରୀମାନେ ଏହି ଅଭ୍ୟାସର ସୁଯୋଗ ନେଇ, ମଳଗଦା ପାଖରେ ଲୁଚିବସିଥାନ୍ତି । ଏବଂ ଗଣ୍ଡା ପଛେଇ ପଛେଇ ଯିବାବେଳେ ପଛରୁ ଶିକାର କରିଥାନ୍ତି ।

ଗଣ୍ଡା ସାଧାରଣତଃ ମଣିଷକୁ ଆକ୍ରମଣ କରେ ନାହିଁ । ବରଂ ମଣିଷକୁ ଦେଖିଲେ ଜଙ୍ଗଲ ଭିତରେ ପଶିଯାଇ ଆତ୍ମଗୋପନ କରେ । ମାତ୍ର ମଣିଷ ସହିତ ହଠାତ୍ ମୁହାଁମୁହିଁ ହୋଇଗଲେ କିମ୍ବା ମଣିଷଦ୍ୱାରା ଉତ୍ତେଜିତ ହେଲେ ସେ ଆକ୍ରମଣ କରିବାକୁ ମାଡ଼ିଆସେ । ଗଣ୍ଡାର ଦୃଷ୍ଟିଶକ୍ତି ଅତି କ୍ଷୀଣ, ମାତ୍ର ଶ୍ରବଣ ଶକ୍ତି ଅତି ପ୍ରଖର । ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଅନେକ ପକ୍ଷୀ ତାହାକୁ ସାହାଯ୍ୟ କରନ୍ତି । ବଗ, କଜଳପାତୀ ଏବଂ କାଉ ପ୍ରଭୃତି ପକ୍ଷୀ ଗଣ୍ଡା ଉପରେ ବସି ଟିଙ୍କ ଓ ପୋକଜୋକ ଖାଉଥାଆନ୍ତି । ଶତ୍ରୁର ଆଗମନରେ ଏମାନେ ଉଡ଼ି ଚାଲିଯାଆନ୍ତି । ଗଣ୍ଡା ଏଥିରୁ ଆକ୍ରମଣର ସୂଚନା ପାଇ ଜଙ୍ଗଲ ଭିତରକୁ ଚାଲିଯାଏ ।

## ସାମାଜିକ ଓ ପାରିବାରିକ ଜୀବନ...

ଗଣ୍ଡା ସାଧାରଣତଃ ଏକାକୀ ଜୀବନ ଯାପନ କରେ । ଗୋଟିଏ ଜଙ୍ଗଲରେ ବହୁ ସଂଖ୍ୟକ ଗଣ୍ଡା ରହୁଥିଲେ ମଧ୍ୟ ସେମାନେ ପ୍ରାୟ ଏକାଏକା

ବୁଲିବାକୁ ଭଲ ପାଆନ୍ତି । ଜଙ୍ଗଲରେ ଯେତେଗୁଡ଼ିଏ ରାସ୍ତା ପଡ଼ିଥିଲେ ମଧ୍ୟ ସେଥିମଧ୍ୟରୁ କିଛି ରାସ୍ତାକୁ ଏମାନେ ବ୍ୟବହାର କରିଥାନ୍ତି । ସର୍ବସାଧାରଣ ରାସ୍ତାରୁ ଯେଉଁ ଛୋଟ ଛୋଟ ରାସ୍ତାମାନ ବାହାରିଥାଏ, ତାହା ମଧ୍ୟରୁ ଗୋଟିଏ ରାସ୍ତାକୁ ଗୋଟିଏ ଗୋଟିଏ ଗଣ୍ଡା ନିଜର ସ୍ୱତନ୍ତ୍ର ରାସ୍ତାରୂପେ ବ୍ୟବହାର କରନ୍ତି । ଏହି ରାସ୍ତାଗୁଡ଼ିକ ସେମାନଙ୍କର ବିଶ୍ରାମସ୍ଥଳୀକୁ ସାଧାରଣତଃ ଯାଇଥାଏ । ଗଣ୍ଡାମାନେ ସାଧାରଣତଃ ବଡ଼ବଡ଼ ଘାସଘେରା ଏହି ବିଶ୍ରାମସ୍ଥଳୀରେ ମଧ୍ୟରାତ୍ରିଠାରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଶୋଇବାରେ ବ୍ୟସ୍ତ ରହନ୍ତି । କୌଣସି ସମୟରେ ବିପଦର ସୂଚନା ପାଇଲେ, ଏମାନେ ସର୍ବସାଧାରଣ ରାସ୍ତା ଭିତରକୁ ଦଉଡ଼ି ପଳେଇଥାନ୍ତି ।

ଗଣ୍ଡାମାନେ ପ୍ରାୟ ସତୁରୀ ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି । ନଅ ଦଶବର୍ଷ ବେଳକୁ ଏମାନଙ୍କର ଯୌନ ପରିପକ୍ୱତା ଆସିଥାଏ । ମାଈ ଗଣ୍ଡାର ଯୌନ ପରିପକ୍ୱତା ଚାରି ପାଞ୍ଚବର୍ଷ ବେଳକୁ ଆସିଯାଏ । ପ୍ରତି ଦେଢ଼ମାସ ଅନ୍ତରରେ ମାଈଗଣ୍ଡା ଯୌନାବେଶ ଅବସ୍ଥାକୁ ଆସେ ଓ ଏହି ଅବସ୍ଥା ଚବିଶ ଘଣ୍ଟା ପର୍ଯ୍ୟନ୍ତରହେ । ଉଭୟ ପୁରୁଷଗଣ୍ଡା ଓ ମାଈଗଣ୍ଡା ମାନଙ୍କର ଯୌନାବେଶ ଅବସ୍ଥାରେ ସଙ୍ଗମ ଘଟିଲେ ଗର୍ଭଧାରଣ ସମ୍ଭବ ହୁଏ । ପ୍ରାୟ ଘଣ୍ଟାଏ କାଳ ଏମାନେ ସଙ୍ଗମରତ ରହନ୍ତି ଏବଂ ସଙ୍ଗମ ପରେ ଉଭୟେ ନିଜନିଜ ରାସ୍ତାରେ ଚାଲିଯାଆନ୍ତି । ଫେବୃୟାରୀ ମାସଠାରୁ ଏପ୍ରିଲ୍ ମାସ ଶେଷ ପର୍ଯ୍ୟନ୍ତ ସହବାସ ପାଇଁ ଏମାନଙ୍କର ଉପଯୁକ୍ତ ସମୟ । ଗର୍ଭଧାରଣ ସମୟ ଷୋଳ ମାସରୁ ସତର ମାସ । ଥରକେ ମାତ୍ର ଗୋଟିଏ ଛୁଆ ଜନ୍ମ ହୁଏ । ସଦ୍ୟଜାତ ଛୁଆର ଉଚ୍ଚତା ପ୍ରାୟ ଚାରିଫୁଟ ଓ ଓଜନ ପ୍ରାୟ ଷାଠିଏ କିଲୋଗ୍ରାମ ଥାଏ । ତିନି ଚାରିବର୍ଷ ପର୍ଯ୍ୟନ୍ତ ଛୁଆ ମା'ର ସ୍ତନ୍ୟପାନ କରେ । ଏହି ସମୟ ମଧ୍ୟରେ ମାଆ ଗଣ୍ଡା ଯୌନାବେଶ ଅବସ୍ଥାକୁ ଆସେନାହିଁ । ସେ ଛୁଆର ଅତିଶୟ ଯତ୍ନ ନିଏ । ନିରାପତ୍ତା ପାଇଁ ଛୁଆକୁ

ସବୁବେଳେ ନିଜର ସାମନାରେ ରଖିଥାଏ ଏବଂ ଶତ୍ରୁ ଆକ୍ରମଣରୁ ରକ୍ଷା କରିବାକୁ ଆପ୍ରାଣ ଚେଷ୍ଟା କରେ । ଛୁଆ ସଧ୍ୟ ମା'ପ୍ରତି ଅତିମାତ୍ରାରେ ଆସକ୍ତ ରହେ ।

ବୟସ ବଢ଼ିଲେ ଛୁଆର ନାକ ଉପରେ ଏକ ଶିଙ୍ଗ ଉଠେ । ଚର୍ମ ଉପରେ ଏକ ଲୋମଗୁଚ୍ଛ ଏକପ୍ରକାର ଅଠାଳିଆ ପଦାର୍ଥ ଦ୍ୱାରା ଶକ୍ତ ଭାବରେ ବାନ୍ଧିହୋଇ ଏହି ଶିଙ୍ଗର ସୃଷ୍ଟି ହୁଏ । ଥରେ ଭାଙ୍ଗିଗଲେ ଏହି ଶିଙ୍ଗ ପୁଣି ଥରେ ଉଠିଥାଏ । ମାଈ ଗଣ୍ଡାର ଶିଙ୍ଗ ଅପେକ୍ଷା ପୁରୁଷ ଗଣ୍ଡାର ଶିଙ୍ଗ ଅଧିକ ବଡ଼ । ସାଧାରଣ ଅବସ୍ଥାରେ ଗୋଟିଏ ଶିଙ୍ଗ ପ୍ରାୟ ଦଶ ଇଞ୍ଚ ଉଚ୍ଚ ହୁଏ ଏବଂ ଏହାର ଓଜନ ପ୍ରାୟ ଅଢ଼େଇ କିଲୋଗ୍ରାମ ।

## ଶରୀରର ବିଭିନ୍ନ ଅଂଶର ଉପଯୋଗିତା–

ଏବେ ମଧ୍ୟ ପୃଥିବୀର ବହୁ ସଭ୍ୟ ଦେଶର ଲୋକଙ୍କ ମଧ୍ୟରେ ଗଣ୍ଡା ଶିଙ୍ଗର ଐନ୍ଦ୍ରଜାଲିକ ଶକ୍ତି ଏବଂ ଦ୍ରବ୍ୟଗୁଣ ବିଷୟରେ ଅନ୍ଧ ବିଶ୍ୱାସ ରହିଛି । ଏହି କାରଣରୁ ଏକ କିଲୋଗ୍ରାମ ଗଣ୍ଡା ଶିଙ୍ଗର ଦାମ ପ୍ରାୟ ପନ୍ଦରହଜାର ଟଙ୍କାରୁ କୋଡ଼ିଏହଜାର ଟଙ୍କା ମୂଲ୍ୟ ହୁଏ । ଅନ୍ୟ କଥାରେ କହିବାକୁ ଗଲେ ଏହାର ମୂଲ୍ୟ ସମଓଜନବିଶିଷ୍ଟ ସୁନାର ମୂଲ୍ୟ ସହିତ ସମାନ । ଜାପାନ, ଚୀନ୍, ନେପାଳ, ବର୍ମା ଓ ଥାଇଲାଣ୍ଡ ଆଦି ଦେଶର ଲୋକଙ୍କର ବିଶ୍ୱାସ ଗଣ୍ଡା ଶିଙ୍ଗର ଚୂର୍ଣ୍ଣ ସେବନ କଲେ ଯୌନଶକ୍ତି ଓ ସଂଭୋଗ ଶକ୍ତି ବୃଦ୍ଧି ହୁଏ । ପୂର୍ବ କାଳରେ ରାଜା ମହାରାଜାମାନଙ୍କର ବିଶ୍ୱାସ ଥିଲା, ଗଣ୍ଡା ଶିଙ୍ଗରେ ପ୍ରସ୍ତୁତ ପାତ୍ରରେ ମଦ୍ୟ ଢାଳିଲେ ଯଦି ତାହା ମିଶ୍ରିତ ମଦ ହୋଇଥିବ ତେବେ ସେଥିରୁ ଫେଣ ବାହାରେ । ତେଣୁ ମଦ୍ୟ ବିଷାକ୍ତ ବୋଲି ସହଜରେ ଜଣାପଡ଼େ । କେତେକ ଲୋକ ବିଶ୍ୱାସ କରନ୍ତି ଯେ, ଏହି ଚୂର୍ଣ୍ଣକୁ ସେବନ କଲେ ପ୍ରସବ ବେଦନା ଲାଘବ ହୁଏ । କ୍ଷତ ସ୍ଥାନରେ ଏହି ଚୂର୍ଣ୍ଣକୁ ପ୍ରୟୋଗ କଲେ ରକ୍ତସ୍ରାବ ବନ୍ଦ ହୋଇଯାଏ । ଶିଙ୍ଗରୁ ପ୍ରସ୍ତୁତ ମୁଦ୍ରିକାକୁ ଆଙ୍ଗୁଠିରେ ଧାରଣ କଲେ, ଅର୍ଶ ରୋଗର ନିରାକରଣ ହୁଏ ।

ଶ୍ରାଦ୍ଧୋତ୍ସବରେ ଶିଙ୍ଗକୁ ପ୍ରସ୍ତୁତ ପାତ୍ରରେ ଜଳ କିମ୍ବା ଦୁଧ ଢାଳି ଅର୍ପଣ କଲେ ପୁଣ୍ୟ ହୁଏ ବୋଲି ଅନେକଙ୍କର ବିଶ୍ୱାସ ଅଛି ।

ଗଣ୍ଡା ମୂତ୍ରରେ ପବନ ନିରୋଧକ ଗୁଣ ରହିଛି ବୋଲି ବିଶ୍ୱାସ କରାଯାଏ । ଏହାକୁ ସେବନ କଲେ ଶ୍ୱାସରୋଗର ନିରାକରଣ ହୁଏ ବୋଲି କହନ୍ତି । ଗଣ୍ଡା ମୂତ୍ରକୁ ଗୋଟିଏ ଘଡ଼ିରେ ରଖି ଘରର ଦ୍ୱାର ଦେଶରେ ଝୁଲାଇ ରଖିଲେ ଭୂତ, ପ୍ରେତ ପ୍ରଭୃତି ଅନିଷ୍ଟକାରୀ ଶକ୍ତି ଘର ଭିତରେ ପ୍ରବେଶ କରିପାରେ ନାହିଁ ବୋଲି ଲୋକଙ୍କର ବିଶ୍ୱାସ । ଏହିସବୁ କାରଣରୁ ଆସାମର ଗୌହାଟି ଚିଡ଼ିଆଖାନାରେ ଗଣ୍ଡା ମୂତ୍ର ଲିଟର ପ୍ରତି ବାର ଟଙ୍କାରୁ ପନ୍ଦର ଟଙ୍କା ଦରରେ ବିକ୍ରୀ ହେଉଛି ।

ଗଣ୍ଡା ମାଂସରୁ ଖଣ୍ଡିଏ ଚୋବାଇ ଖାଇଲେ ଆମାଶୟ ରୋଗର ଉପଶମ ହୁଏ ବୋଲି ଲୋକଙ୍କ ବିଶ୍ୱାସ । ନେପାଳର ଲୋକେ ଗଣ୍ଡାର ରକ୍ତ ଏବଂ ମାଂସକୁ ଦେବତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରନ୍ତି । ନେପାଳ, ବର୍ମା ଓ ଥାଇଲାଣ୍ଡର ଲୋକମାନଙ୍କର ବିଶ୍ୱାସ ଘରୁ ଶବକୁ ବାହାର କଲାବେଳେ ଗଣ୍ଡା ରକ୍ତ ସିଞ୍ଚିଲେ ପ୍ରେତାତ୍ମାର ସ୍ୱର୍ଗପ୍ରାପ୍ତି ହୁଏ । ଶାସ୍ତ୍ରୀୟ ବିଧି ଅଛିଯେ, ଯେଉଁଦିନ ଗଣ୍ଡାମାଂସ ମିଳିବ ସେଦିନ ପିତୃ ଶ୍ରାଦ୍ଧ କରାଯାଇ ପାରିବ । ଧର୍ମରାଜ ଯୁଧିଷ୍ଠିର ଅର୍ଜୁନଙ୍କ ଦ୍ୱାରା ଜଙ୍ଗଲରୁ ଗଣ୍ଡା ମାଂସ ଆଣି ପିତୃ ଶ୍ରାଦ୍ଧ କରିଥିଲେ ।

ଗଣ୍ଡା ହାଡ଼ରୁ ଟୁକୁରାଟିଏ ନେଇ ତେଉଁରିଆରେ ଭର୍ତ୍ତିକରି ସେଇ ତେଉଁରିଆକୁ ହାତରେ ଧାରଣ କଲେ ମଣିଷ ଗଣ୍ଡାଭଳି ଶକ୍ତିଶାଳୀ ହୁଏ । ଗଣ୍ଡା ହାଡ଼କୁ ଜମିରେ ପୋତିଲେ ଅଧିକ ଫସଲ ଉତ୍ପାଦନ ହେବ ବୋଲି ବହୁ ଉପଜାତି ଲୋକଙ୍କର ଧାରଣା । ଏତଦ୍ ବ୍ୟତୀତ ମାଈ ଗଣ୍ଡାର ଗର୍ଭସ୍ଥ ଶିଶୁ କିମ୍ବା ଭ୍ରୁଣକୁ କବିରାଜମାନେ ଔଷଧରେ ବ୍ୟବହାର କରନ୍ତି । ବାତରୋଗ ନିରାକରଣ ପାଇଁ ଏହା ଏକ ଉପଚାରକ ବୋଲି ଅନେକଙ୍କର ମତ ।

ଆଗକାଳର ଲୋକମାନଙ୍କର ବିଶ୍ୱାସ ଥିଲା ଯେ, ଗଣ୍ଡା ଚମଡ଼ାର ସ୍ଥୂଳତା ଦୃଷ୍ଟିରୁ ସେଥିରେ ଢାଲ ପ୍ରସ୍ତୁତ କରି ବ୍ୟବହାର କଲେ ଶତ୍ରୁ ଆକ୍ରମଣରୁ ରକ୍ଷା ମିଳିବ । ତେଣୁ ଓଡ଼ିଆ ପାଇକ ପୁଆମାନେ ଯୁଦ୍ଧ କ୍ଷେତ୍ରରେ ବ୍ୟବହାର ପାଇଁ ଗଣ୍ଡା ଚମଡ଼ାରେ ଢାଲ ପ୍ରସ୍ତୁତ କରୁଥିଲେ । ଗଣ୍ଡା ଚମଡ଼ାରେ ନିର୍ମିତ ଢାଲରେ ବନ୍ଧୁକର ଗୁଳି ମଧ୍ୟ ଭେଦ କରିପାରେ ନାହିଁ । ଗଣ୍ଡା ଚମଡ଼ାରେ ବୁଲେଟ୍ ଭେଦ କରିପାରେ ନାହିଁ । ଏହିପରି ଗଣ୍ଡା ସମ୍ପର୍କରେ ବହୁପୌରାଣିକ କାହାଣୀ ଓ ବିଶ୍ୱାସ ଅଦ୍ୟାବଧି ପ୍ରଚଳିତ ରହିଛି ।

ଗଣ୍ଡା ଶରୀରର ପ୍ରତ୍ୟେକ ଅଂଶ ମାନବ ଉପକାରରେ ଲାଗୁ ଥିବାରୁ ଆଇନ୍ ପ୍ରଣୟନ ଦ୍ୱାରା ଗଣ୍ଡାଶିକାର ନିଷିଦ୍ଧ କରାଯାଇଛି । ଅବଶ୍ୟ ଏହା ପୂର୍ବରୁ ଗଣ୍ଡାଶିକାର ହେଉଥିଲା । ଗଣ୍ଡାର ବିଶାଳକାୟ ଆକୃତି ଯୋଗୁଁ ହାତୀ ଓ ବାଘମାନେ ମଧ୍ୟ ଗଣ୍ଡାକୁ ଭୟ କରିଥାନ୍ତି । କିନ୍ତୁ ଅନେକଗୁଡ଼ିଏ କୁସଂସ୍କାର ଓ ଅନ୍ଧବିଶ୍ୱାସ ଗଣ୍ଡାର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ବ୍ୟବହାର ଉପରେ ପ୍ରଚଳିତ ଥିବାରୁ, କେବଳ ଶିକାର ଦ୍ୱାରା ହିଁ ଗଣ୍ଡାର ସଂଖ୍ୟା ଦ୍ରୁତ ବେଗରେ କମିଯିବାକୁ ଲାଗିଲା । ୧୯୦୪ ମସିହା ଗଣନାରୁ ଜଣାଗଲାଯେ ଆମଦେଶରେ ମାତ୍ର ୨୦ଟି ଗଣ୍ଡା ଅଛନ୍ତି । ତେଣୁ ଗଣ୍ଡା ସଂରକ୍ଷଣ ପାଇଁ ସ୍ୱତନ୍ତ୍ର ଆଇନ୍ ପ୍ରଣୀତ ହୋଇ ଗଣ୍ଡା ଶିକାର ସମ୍ପୂର୍ଣ୍ଣରୂପେ ନିଷିଦ୍ଧ କରାଗଲା । ଆଇନ ଦ୍ୱାରା ଶିକାର ନିଷେଧ ନହୋଇଥିଲେ ଗଣ୍ଡା ଜୀବଟି ସଂସାରରୁ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଯାଇଥାନ୍ତି ।

ସଂପ୍ରତି ଆମ ଦେଶର ପ୍ରତି ଚିଡ଼ିଆଖାନାରେ ଗଣ୍ଡା ଦେଖିବାକୁ ମିଳନ୍ତି । ଆସାମ ସରକାର ପ୍ରତିବର୍ଷ ବିଦେଶର ଚିଡ଼ିଆଖାନାମାନଙ୍କୁ ଗଣ୍ଡା ରପ୍ତାନୀ କରି ପ୍ରଚୁର ବୈଦେଶିକ ମୁଦ୍ରା ଅର୍ଜନ କରିଥାନ୍ତି । ବିଦେଶକୁ ପଠା ଯାଉଥିବା ପ୍ରତ୍ୟେକଟି ଗଣ୍ଡାର ମୂଲ୍ୟ ପ୍ରାୟ ଦୁଇଲକ୍ଷ ଟଙ୍କା । ଏହା ଶୁଣିବାକୁ ଆଶ୍ଚର୍ଯ୍ୟ ଲାଗିଲେ ମଧ୍ୟ ଏକାନ୍ତ ଭାବେ ସତ୍ୟ ଅଟେ ।





# କୃଷ୍ଣସାର

ମୃଗାମାନଙ୍କ ଭିତରେ ସବୁଠାରୁ ଅଧିକ ସୁନ୍ଦର ଓ ଅଧିକ ଆକର୍ଷଣୀୟ ଏହି କୃଷ୍ଣସାର ମୃଗ, ଏକାନ୍ତ ଭାବରେ ଭାରତୀୟ । ଭାରତ ବ୍ୟତୀତ ଅନ୍ୟତ୍ର ଏହା ଦେଖାଯାଏ ନାହିଁ ।

**ବିସ୍ତୃତି :-**

ଆମ ଦେଶର ସମତଳ ଅଞ୍ଚଳ, ଉତ୍ତର-ପଶ୍ଚିମ ଓ ମଧ୍ୟ ଭାରତର ନିମ୍ନ ପାହାଡ଼ିଆ ଭୂମି ଏବଂ କୃଷ୍ଣାନଦୀର ସାମାନ୍ୟ ଦକ୍ଷିଣକୁ ଥିବା ଡେକାନ୍ ସମତଳ ଭୂମିରେ କୃଷ୍ଣସାର ମୃଗ ଦେଖାଯାଆନ୍ତି । ଆମ ଓଡ଼ିଶାରେ ପୁରୀ ଓ କୋଣାର୍କ ଉପକୂଳର ଝାଉଁବଣରେ, ପାରିକୁଦର ଜଙ୍ଗଲରେ ଏବଂ ଗଞ୍ଜାମ ଜିଲ୍ଲାର ବୁଗୁଡ଼ା ଅଞ୍ଚଳରେ ଏମାନେ ଦୃଷ୍ଟିଗୋଚର ହୁଅନ୍ତି ।

ସମ୍ପ୍ରତି ଅବଲୁପ୍ତ ହୋଇ ଆସୁଥିବା ଜୀବ-ଜନ୍ତୁମାନଙ୍କ ମଧ୍ୟରେ କୃଷ୍ଣସାର ଅନ୍ୟତମ । ସମୟ ଥିଲା, ଯେତେବେଳେ କି ଆମ ଦେଶର ପ୍ରାୟ ସବୁ ଅଞ୍ଚଳରେ ସେମାନେ ବହୁ ସଂଖ୍ୟାରେ ଦଳଦଳ ହୋଇ ବୁଲୁଥିଲେ । ଖୋଲା

ସମତଳଅଞ୍ଚଳ କିମ୍ବା ନଦୀ ଉପତ୍ୟକାରେ ଚରୁଥିବାର ଲକ୍ଷ୍ୟ କରାଯାଉଥିଲା; କିନ୍ତୁ ବର୍ତ୍ତମାନ ସେପରି ଦୃଶ୍ୟ ଆଉ ଦେଖିବାକୁ ମିଳୁନାହିଁ । ଘନ ଅରଣ୍ୟ ଛାଡ଼ି ଏମାନେ ସାଧାରଣତଃ ସମତଳ ଭୂଇଁରେ ଅବସ୍ଥିତ ବୁଦୁବୁଦୁକିଆ ଜଙ୍ଗଲ ବା ଶସ୍ୟକ୍ଷେତ୍ରରେ ରହିବାକୁ ସୁଖ ପାଆନ୍ତି କିନ୍ତୁ ଏହାହିଁ ଏମାନଙ୍କର ଧ୍ୱଂସର ପ୍ରଧାନ କାରଣ । ଏତଦ୍ ବ୍ୟତୀତ ଏମାନଙ୍କର ଅପରୂପ ଶାରୀରିକ ସୌନ୍ଦର୍ଯ୍ୟ, ସୁନ୍ଦର ଶିଙ୍ଗ ଓ ସୁସ୍ୱାଦୁ ମାଂସ ଶିକାରୀମାନଙ୍କର ଦୃଷ୍ଟି ଆକର୍ଷଣ କଲା । ତେଣୁ ଏମାନଙ୍କର ସଂଖ୍ୟା କମି ଆସିଲା ।

## ଆକୃତି ଓ ରଙ୍ଗ :-

କୃଷ୍ଣସାର ଆକୃତିରେ ଛୋଟ ଓ ଦେଖିବା ପାଇଁ ଖୁବ୍ ସୁନ୍ଦର । ଦେହର ଉପର ଅଂଶ ପିଙ୍ଗଳବର୍ଣ୍ଣ ବା କାଜୁବାଦାମ ଭଳି ରଙ୍ଗ ଓ ତଳ ଅଂଶ ଅର୍ଥାତ୍ ପେଟ ଅଂଶଟି ଧଳା । ମୁହଁର ଉଭୟ ପାର୍ଶ୍ୱରେ ଧଳାଧଳା ଚିହ୍ନ ଥାଏ । ଶିଙ୍ଗଗୁଡ଼ିକ ମୋଡ଼ିମୋଡ଼ି ହୋଇ ଉପରକୁ ଉଠିଥାଏ । ଏହି ଚମତ୍କାର ବର୍ଣ୍ଣ ସଂଯୋଗ ଓ ସୁଦୃଶ୍ୟ ଶିଙ୍ଗ ହେତୁ କୃଷ୍ଣସାର ଅନ୍ୟ ମୃଗମାନଙ୍କ ଅପେକ୍ଷା ଅଧିକ ଆକର୍ଷଣୀୟ ଓ ଆଭିଜାତ୍ୟସମ୍ପନ୍ନ ମନେ ହୁଏ ।

ଛୋଟବେଳେ ଏମାନଙ୍କର ରଙ୍ଗ ସାଧାରଣତଃ ଈଷତ୍ ହଳଦିଆ ଓ ଧୂସର ଥାଏ । ଅଣ୍ଡିରା କୃଷ୍ଣସାର ମୃଗର ଦେହର ରଙ୍ଗ ତିନିବର୍ଷ ଠାରୁ କଳା ହେବା ଆରମ୍ଭ କରେ । ଦକ୍ଷିଣ ଭାରତରେ ଏମାନଙ୍କର ରଙ୍ଗ କଳା ନହୋଇ ଧୂସରିଆ କଳା ହେବାର ଦେଖାଯାଏ ଓ ପେଟତଳ ସଫା ଧଳା ହୋଇଥାଏ । ବର୍ଷାପରେ ଏମାନଙ୍କର ତ୍ୱକ୍ ଚିକ୍କଣ ଦେଖାଯାଏ । ଅଣ୍ଡିରା ଛୁଆମାନଙ୍କର ପ୍ରଥମ ବର୍ଷ ଶିଙ୍ଗ ଗଜୁରିଥାଏ । କିନ୍ତୁ ଦ୍ୱିତୀୟ ବର୍ଷକୁ ଏହା ମୋଡ଼ିମୋଡ଼ି ହେବା

ଆରମ୍ଭ କରେ । ସାଧାରଣତଃ ଦେହର କଳା ରଙ୍ଗ ଘନୀଭୂତ ହେବା ସଙ୍ଗେ ତାଳଦେଇ ଶିଙ୍ଗ ମୋଡ଼ିମୋଡ଼ି ହେବାକୁ ଲାଗେ । ତିନିବର୍ଷ ବୟସ ହେଲାବେଳକୁ ଶିଙ୍ଗ ଗଠନ ସମାପ୍ତ ହୁଏ । ମାଈ କୃଷ୍ଣସାରର ଶିଙ୍ଗ ସିଧାସଳଖ ବଢ଼ି ଯାଇଥାଏ । ତେବେ ମାଈ କୃଷ୍ଣସାରଙ୍କ ମଧ୍ୟରୁ ଅନେକଙ୍କର ଶିଙ୍ଗ ନଥାଏ ।

ପ୍ରାପ୍ତ ବୟସ୍କ କୃଷ୍ଣସାର ମୃଗ ହାରାହାରି ଚାରିଫୁଟ ଲମ୍ବ ଓ କାନ୍ଧ ପାଖର ଉଚ୍ଚତା ଦୁଇଫୁଟ ଦଶଇଞ୍ଚ । ଏହାର ଓଜନ ଛତିଶ କିଲୋଗ୍ରାମରୁ ଚାଳିଶ କିଲୋଗ୍ରାମ ପର୍ଯ୍ୟନ୍ତ ହୋଇଥାଏ । ଶିଙ୍ଗଗୁଡ଼ିକ ପ୍ରାୟତଃ ୧ ଫୁଟ, ୨ ଇଞ୍ଚରୁ ଦୁଇଫୁଟ ପର୍ଯ୍ୟନ୍ତ ଲମ୍ବ ହୋଇଥିବାର ଦେଖିବାକୁ ମିଳେ । ଦକ୍ଷିଣ ଭାରତର କୃଷ୍ଣସାରଙ୍କ ଅପେକ୍ଷା, ଉତ୍ତର ଭାରତରେ ଦେଖା ଯାଉଥିବା ମୃଗମାନେ ଅପେକ୍ଷାକୃତ ଆକୃତିରେ ବଡ଼ । କୃଷ୍ଣସାର ମୃଗର ଲାଞ୍ଜ ପ୍ରାୟ ଛୋଟ ଅର୍ଥାତ୍ ଛଅ ସାତ ଇଞ୍ଚ ଲମ୍ବର ହୁଏ । ଖୁରାଗୁଡ଼ିକ ନରମ ଓ ତୀକ୍ଷ୍ଣ ।

## ଆଚାର ବ୍ୟବହାର :-

ଏହି ଜାତୀୟ ମୃଗମାନେ ସାଧାରଣତଃ ପଡ଼ିଆ ଜମି, ବଙ୍କାଟଙ୍କା ପାହାଡ଼ିଆ ସ୍ଥାନ, ବଣବୁଦା ଓ ପତଳା ଜଙ୍ଗଲରେ ରହିବାକୁ ଭଲ ପାଆନ୍ତି । ଏମାନେ ସୂର୍ଯ୍ୟକିରଣ ବେଶ୍ ସହ୍ୟ କରିପାରନ୍ତି ଓ ଏହି କାରଣରୁ ଗହଳିଆ ଗଛ ଛାଇ ଓ ଘଞ୍ଚ ଅରଣ୍ୟକୁ ଏମାନେ ପସନ୍ଦ କରନ୍ତି ନାହିଁ । କେବଳ ଅତ୍ୟଧିକ ଭୟ ପାଇଲେ ସେମାନେ ଜଙ୍ଗଲ ଭିତରକୁ ପଳେଇ ଯାଇଥାନ୍ତି । ବିଭିନ୍ନ ଜାତୀୟ ଘାସ, ଡାଲି ଓ ଶସ୍ୟ ଜାତୀୟ ଗଛ, ଲାଉ ଏବଂ ତରଭୁଜ ଭଳି ଫଳ ଏମାନଙ୍କର ଅତି ପ୍ରିୟ ଖାଦ୍ୟ ।

ସାଧାରଣତଃ ଦଳବଦ୍ଧ ହୋଇ ଏମାନେ ଚରୁଥିବାର ଲକ୍ଷ୍ୟ କରାଯାଏ । ଗୋଟିଏ ଦଳରେ ପ୍ରାୟ କୋଡ଼ିଏଟିରୁ ତିରିଶଟି ପର୍ଯ୍ୟନ୍ତ କୃଷ୍ଣସାର ଥାଆନ୍ତି; କିନ୍ତୁ

ରାଜସ୍ଥାନ ଓ ପଞ୍ଜାବରେ ଗୋଟିଏ ଗୋଟିଏ ଦଳରେ ପ୍ରାୟ ଶହଶହ କୃଷ୍ଣସାର ଥିବାର ମଧ୍ୟ ଦେଖାଯାଏ । ବଡ଼ି ସକାଳୁ ମଧ୍ୟାହ୍ନ ପର୍ଯ୍ୟନ୍ତ ଏବଂ ସନ୍ଧ୍ୟାବେଳେ ଏମାନେ ଚରାବୁଲା କରିବାକୁ ବାହାରନ୍ତି ଓ ଅପରାହ୍ନର ଗରମ ସମୟତକ ଛାଇତଳେ ବିଶ୍ରାମ ନିଅନ୍ତି । ପାଣି ନ ପିଇ ପ୍ରାୟ ସପ୍ତାହେ ପର୍ଯ୍ୟନ୍ତ ଏମାନେ ରହିପାରିବାର ଦେଖାଯାଇଛି । ସେହି କାରଣରୁ ଅନ୍ୟାନ୍ୟ ହରିଣ ଓ ବାରଶିଙ୍ଗା ଭଳି ପ୍ରତିଦିନ ଭୋର୍ ସମୟରେ ଓ ସନ୍ଧ୍ୟା ସମୟରେ ଏମାନେ ପାଣି ବା ନାଳ କୂଳକୁ ଆସିବାର ଦେଖାଯାଏ ନାହିଁ ।

ଏମାନେ ମଣିଷକୁ ସବୁବେଳେ ଭୟ କରନ୍ତି ଏବଂ ସେଥିପାଇଁ ଚାଷ ଜମିକୁ ପ୍ରାୟ ଆସନ୍ତି ନାହିଁ । ଯଦି ଆସନ୍ତି ତେବେ ଶସ୍ୟ ନାଖାଇ ବହୁପରିମାଣରେ ଘାସ ଖାଆନ୍ତି । କୃଷ୍ଣସାରର ଶ୍ରବଣ ଶକ୍ତି ଓ ଘ୍ରାଣ ଶକ୍ତି ତୁଳନାରେ ଦୃଷ୍ଟିଶକ୍ତି ଓ ଗତିଶୀଳତା ଅତି ପ୍ରଖର । ଏହାହିଁ ସେମାନଙ୍କର ଆତ୍ମରକ୍ଷାର ପ୍ରଧାନ ସମ୍ବଳ । ନିର୍ଭୟରେ ଚରୁଥିବାବେଳେ ମଧ୍ୟ ପ୍ରତି ଦୁଇ ତିନି ମିନିଟ୍ ଅନ୍ତରରେ ଏମାନେ ନିଜ ବେକକୁ ସଳଖି ଚାରିଆଡ଼କୁ ସତର୍କ ଦୃଷ୍ଟିପାତ କରନ୍ତି ଓ ଆଶ୍ୱସ୍ତ ହେଲେ ପୁଣି ଚରିବାରେ ମନୋନିବେଶ କରନ୍ତି । ସାମାନ୍ୟତମ ବିପଦର ସୂଚନା ପାଇବା ମାତ୍ରେ ଦଳରୁ ଜଣେ ଡେଇଁପଡ଼ି ଲକ୍ଷ୍ୟ କରେ ଓ ସଙ୍ଗେସଙ୍ଗେ ଦୌଡ଼ିବା ଆରମ୍ଭ କରିଦିଏ । ପରେପରେ ଅନ୍ୟମାନେ ଏହି ପଳାୟନ ଦୌଡ଼ରେ ଯୋଗ ଦିଅନ୍ତି । ଆଖିବୁଜା ୨ ।୩ ଶହ ମିଟର ଦୌଡ଼ି ପଳେଇଗଲା ପରେ ଏମାନେ ରହନ୍ତି ଓ ରହିଯାଇ ବିପଦର କାରଣ ସମ୍ପର୍କରେ ଅନୁସନ୍ଧାନ କରନ୍ତି । ଦଳର ନିରାପତ୍ତା ଦାୟିତ୍ୱ ସାଧାରଣତଃ ବୟସ୍କା ମୃଗାଣୀ ଉପରେ ନ୍ୟସ୍ତ ଥାଏ । ଏହା ଏମାନଙ୍କର ବିଶେଷତ୍ୱ ।

**ପାରିବାରିକ ଓ ସାମାଜିକ ଜୀବନ :–**

ବିଭିନ୍ନ ଋତୁରେ କୃଷ୍ଣସାରମାନଙ୍କର ସାମାଜିକ ଦଳଗଠନରେ ପରିବର୍ତ୍ତନ ଦେଖାଯାଏ । ସାଧାରଣ ସମୟରେ ପ୍ରତ୍ୟେକ ଦଳରେ ପ୍ରାୟ ସମସଂଖ୍ୟକ ଅଣ୍ଡିରା ଓ ମାଈ ମୃଗ ରହିଥାନ୍ତି; କିନ୍ତୁ ପ୍ରଜନନ ଋତୁରେ ଗୋଟିଏ ଦଳରେ ମାତ୍ର ଗୋଟିଏ ପୁରୁଷ ଓ ଅନେକଗୁଡ଼ିଏ ସ୍ତ୍ରୀ କୃଷ୍ଣସାର ଥିବାର ଦେଖାଯାଏ । ଏହି ସମୟରେ ପ୍ରତ୍ୟେକ ଦଳ ନିଜ ନିଜର ଚରାଭୂଇଁର ସୀମା ନିର୍ଦ୍ଧାରଣ କରି, ତାହାକୁ ରକ୍ଷା କରିବାପାଇଁ ଆପ୍ରାଣ ଚେଷ୍ଟା କରନ୍ତି ।

ଯଦିଓ ବର୍ଷର ସବୁ ସମୟରେ ଏମାନେ ସନ୍ତାନ ପ୍ରସବ କରିଥାନ୍ତି ଓ ଯୌନ କ୍ଷମତା ପ୍ରଦର୍ଶନ କରିଥାନ୍ତି; ତେବେ ସାଧାରଣତଃ ମାର୍ଚ୍ଚ ଏପ୍ରିଲ୍ ଓ ସେପ୍ଟେମ୍ବର ଅକ୍ଟୋବର ମାସରେ ଏମାନଙ୍କର ଯୌନ ଆକାଂକ୍ଷା ଅତ୍ୟଧିକ ହୋଇଥାଏ । ସଙ୍ଗମ ଋତୁରେ ଅଣ୍ଡିରା କୃଷ୍ଣସାରମାନଙ୍କ ମଧ୍ୟରେ ଭୀଷଣ ଲଢ଼େଇ ହୁଏ ଓ ବେଳେବେଳେ ଗୋଟିଏ ଅନ୍ୟଟିକୁ ଜୀବନରେ ମାରିଦେବାର ଦେଖାଯାଏ ।

ଛଅ ମାସ ଗର୍ଭଧାରଣ କଲାପରେ ମାଈ କୃଷ୍ଣସାର ଛୁଆ ଜନ୍ମ କରିଥାଏ । ଥରକେ ପ୍ରାୟ ଗୋଟିଏ କିମ୍ବା ଦୁଇଟି ଛୁଆ ଜନ୍ମ ହୋଇଥାଆନ୍ତି । ପ୍ରସବ ପରେ ମା' କିଛି ସମୟ ପାଇଁ ଛୁଆକୁ ଘାସ ବୁଦା ଭିତରେ ଲୁଚେଇ ରଖେ । କାରଣ ଏତିକିବେଳେ ଶତ୍ରୁଆଡୁ ବିପଦର ସମ୍ଭାବନା ବେଶୀ । ଖୁବ୍ ଅଳ୍ପଦିନ ଭିତରେ ଛୁଆମାନେ ମାତୃ ସ୍ତନ୍ୟ ପାନକରି ଶକ୍ତି ସଂଗ୍ରହ କରନ୍ତି ଓ ଦଳରେ ଯୋଗ ଦିଅନ୍ତି । ଜନ୍ମ ସମୟରେ ଛୁଆମାନଙ୍କର ଉଚ୍ଚତା (କାନ୍ଧ ପାଖରେ) ୧ ଫୁଟ ୪ଇଞ୍ଚ ହୋଇଥାଏ ଓ ଓଜନ ଚାରି କିଲୋଗ୍ରାମ ଥାଏ । ଅନେକ ସମୟରେ ଦେଖାଯାଇଛି ଯେ, ମା'ଠାରୁ ଛୁଆ ସ୍ତନ୍ୟପାନ କରିବା ପୂର୍ବରୁ ଉଭୟେ ପରସ୍ପରର

ମୁହଁକୁ ଆଘ୍ରାଣ କରିଥା'ନ୍ତି । ଏହା ସେମାନଙ୍କର ପରସ୍ପର ପ୍ରତି ସ୍ନେହ ପ୍ରଦର୍ଶନର ନମୁନା ।

ଏମାନଙ୍କର ଜୀବନକାଳ ପ୍ରାୟ ୧୫ବର୍ଷ । ବଡ଼ ଆକ୍ରମଣକାରୀ ଜନ୍ତୁ ଦ୍ୱାରା ଏମାନେ ଯେତେ ନିହତ ନ ହୁଅନ୍ତି, ଶିକାରୀ ଦ୍ୱାରା ତା'ଠାରୁ ଅଧିକ ନିହତ ହୋଇଥାନ୍ତି । ଏତଦ୍ ବ୍ୟତୀତ ଅଧିକାଂଶ ସାଧାରଣତଃ ଯକୃତ କୃମିରୋଗ ଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିବାର ଦେଖାଯାଏ ।

ଦୀର୍ଘପଥ ଦୌଡ଼ିବା ଏହି ସୁନ୍ଦର ପ୍ରାଣୀଟି ହେଉଛି ବିଶ୍ୱର ସବୁଠାରୁ ଦ୍ରୁତଗାମୀ ପ୍ରାଣୀ । ଦୌଡ଼ିବା ସମୟରେ ଏହା ଘଣ୍ଟାରେ ୬୫ କିଲୋମିଟରରୁ ଅଧିକ ରାସ୍ତା ଅତିକ୍ରମ କରିପାରେ ।

ପୌରାଣିକ ସାହିତ୍ୟ ଓ ପ୍ରାଚୀନ ସାହିତ୍ୟରେ ହରିଣ ପରି ମୃଗର ମଧ୍ୟ ଯଥେଷ୍ଟ ଆଖ୍ୟାନ ଅଛି । ରାମାୟଣ ଯୁଗରେ ସୁନାର ମାୟାମୃଗ ଦ୍ୱାରା ସୀତାଙ୍କ ମନକୁ ଆକୃଷ୍ଟ କରିବାରେ ରାବଣ ସଫଳକାମୀ ହୋଇଥିଲା । କାବ୍ୟ କବିତାରେ ମଧ୍ୟ ସୁନୟନା ସୁନ୍ଦରୀମାନଙ୍କୁ ମୃଗନୟନା ବୋଲି କବିମାନେ ବର୍ଣ୍ଣନା କରିଛନ୍ତି ।

ପୂର୍ବେ ଆମ ଦେଶରେ ଚିତାବାଘକୁ ବିଶେଷ ଶିକ୍ଷା ଦେଇ କୃଷ୍ଣସାର ମୃଗ ଧରିବା ପାଇଁ ନିୟୋଜିତ କରାଯାଉଥିଲା । ଚିତାପରି କୃଷ୍ଣସାର ମଧ୍ୟ ନିଜର ଗତିଶୀଳତା ପାଇଁ ବିଖ୍ୟାତ । ମୋଗଲ ବାଦଶାହମାନଙ୍କ ସମୟରେ ପୋଷା ଚିତା ଦ୍ୱାରା କୃଷ୍ଣସାର ମୃଗଶିକାର ଏକ ସୌଖିନ କ୍ରୀଡ଼ା ଥିଲା । ମୋଗଲ ସାହିତ୍ୟରେ କୃଷ୍ଣସାର ମୃଗ, ନୀଳଗାଈ ଏବଂ ଚଉଶିଙ୍ଗା ପ୍ରଭୃତିର ବିସ୍ତୃତ ଶିକାର ବିବରଣୀ ରହିଛି । ଯାହା ଜଣାଯାଏ, ସମ୍ରାଟ ଆକବର କୃଷ୍ଣସାର ମୃଗଶିକାର ଉଦ୍ଦେଶ୍ୟରେ ପ୍ରାୟ ଏକହଜାର ଚିତାବାଘ ପୋଷିଥିଲେ ।



# ଘର ଚଟିଆ

ପିଲାମାନେ, ପଢ଼ାଟେବୁଲ ନିକଟରେ ବସି ପାଠ ପଢୁଥିବା ବେଳେ, ତୁମେମାନେ ଲକ୍ଷ୍ୟ କରିଥିବ, ହଠାତ୍ ମୁଣ୍ଡଉପରେ କାଠିକୁଟା ମେଞ୍ଚାଏ ଖସି ପଡ଼ିଲାଣି । ଉପରକୁ ଅନେଇଲେ ଦେଖିପାରିବ, ଗୋଟିଏ ବା ଦୁଇଟି ଛୋଟ ଚଢ଼େଇ ମୁହଁରେ କାଠି, କୁଟା ଧରି କାନ୍ଥରୁ ଆଲମିରା ଉପରକୁ ଓ ସେଠୁ ସ୍କାଇଲାଇଟ୍ ନିକଟକୁ ଉଡ଼ି ବୁଲୁଛନ୍ତି । ଘର ଭିତରେ ଆତଯାତ ହେଉଥିବାରୁ, ଏହି ପକ୍ଷୀଟିର ନାଁ ଘରଚଟିଆ । ସକାଳ ହେଲା ବେଳକୁ କାଉ ଓ ଘରଚଟିଆଙ୍କ ଉପରେ ନଜର ପଡ଼ିଯାଏ । କାଉର କା, କା' ଶବ୍ଦରେ ନିଦ ଭାଙ୍ଗିଗଲା ବେଳକୁ ଦେଖିବାକୁ ମିଳେ, ଚିର୍, ଚିର୍ ଶବ୍ଦକରି ଘରଚଟିଆ ପକ୍ଷୀ ଘରଭିତରେ ଉଡ଼ି ବୁଲୁଛନ୍ତି । କାଉ ଅତି ସାହାସୀ ପକ୍ଷୀ । ତଥାପି ସେ କେବଳ ଅଗଣା ଭିତରକୁ ବା ରୋଷେଇ ଘରର ବାରଣ୍ଡା ପର୍ଯ୍ୟନ୍ତ ଚାଲି ଆସିବାକୁ ସାହସ କରେ । କିନ୍ତୁ ଘରଚଟିଆର ଯେପରି ବେଖାତିର୍ ଭାବ । ଶୋଇବା ଘର, ରୋଷେଇ ଘର, ଧାନଘର ସବୁଠି ତାର ଅବାଧ ପ୍ରବେଶ । ସତେ ଯେପରି ସେ ଘରର ମାଲିକ ।

କେତେବେଳେ ଶୋଇବା ଘର ସ୍କାଇଲାଇଟ୍‌ରେ ବା କଡ଼ି ବରଗା ସନ୍ଧିରେ କାଠି, କୁଟା ଓ କଣ୍ଟା ଡାଳରେ ଘର ତିଆରି କରୁଥାଏ ତ, କେତେବେଳେ ଡ୍ରେସିଂ ଟେବୁଲ୍ ଦର୍ପଣରେ ବସି ନିଜ ପ୍ରତିବିମ୍ବ ସହିତ ଝଗଡ଼ା କରୁଥାଏ । ଅନ୍ୟ କେତେବେଳେ ପାଣି ଟ୍ୟାପ୍ ବା ବେସିନ୍‌ରୁ ଝରି ପଡୁଥିବା ପାଣିରେ ଗାଧୋଇ ପଡୁଥାଏ ।

ଭାରତର ସବୁ ଅଞ୍ଚଳରେ ଏହି ପକ୍ଷୀ ଦେଖିବାକୁ ମିଳିଥାଏ । ଯେଉଁଠି ମଣିଷ ଅଛନ୍ତି, ସେଠି ଘରଚଟିଆ ଅଛନ୍ତି । ପୃଥବୀରେ ଏପରି କୌଣସି ଦେଶ ନାହିଁ, ଯେଉଁଠି ଘରଚଟିଆ ଦେଖାଯାନ୍ତି ନାହିଁ । ରାଜସ୍ଥାନର ମରୁଭୂମି, ହିମାଳୟର ପାର୍ବତ୍ୟ ଅଞ୍ଚଳ, ଜନାକୀର୍ଣ୍ଣ ସହର ଅଥବା ଗାଁ ଗଣ୍ଡା ସର୍ବତ୍ର ମନୁଷ୍ୟର ସହଚର ରୂପେ ଘରଚଟିଆ ବାସ କରେ । କୌଣସି ଏକ ଦୁର୍ଗମ ସ୍ଥାନରେ ମନୁଷ୍ୟ ଯାଇ ବସବାସ କରିବା ମାତ୍ରେ, ଯେଉଁ ପକ୍ଷୀମାନେ ପହଞ୍ଚିଯାନ୍ତି, ସେମାନଙ୍କ ଭିତରେ ଘରଚଟିଆ ପ୍ରଥମ । କ୍ରମେ ନୂଆଯାଗାକୁ ସେମାନେ ଆବରିଯାନ୍ତି ।

ଘରଚଟିଆ ପାଞ୍ଚଇଞ୍ଚରୁ ଛଅଇଞ୍ଚ ଲମ୍ବର ପକ୍ଷୀଟିଏ । ମାଈ ପକ୍ଷୀର ପିଠିପଟର ବର୍ଣ୍ଣ ମାଟିଆ ବାଦାମୀ । ପେଟର ରଂଗ ପାଉଁଶିଆ ଧଳା । ପିଠି ଉପରେ କଳାସିଆ ଡୋରିଆ ଗାର ପଡ଼ିଥାଏ । ଅଣ୍ଡିରା ଚଢ଼େଇର ମୁଣ୍ଡଟି ପାଉଁଶିଆ ଧୂସର, ବେକପାଖରେ କଳା ରଂଗର ଦାଗ ଥାଏ ।

ଘର ଚଟିଆର ନୀଡ଼ ଦେଖିବାକୁ ଆଦୌ ପରିଷ୍କାର ବା ସୁନ୍ଦର ନୁହେଁ । ଭଲ ଭାବରେ ପ୍ରସ୍ତୁତ ନହୋଇ, ଅଳିଆ, କାଠି, କୁଟା ଓ ଛିଣ୍ଡା ସୂତାର ସମାହାରରେ କେବଳ ଗ'ଠ' କାମ ହୋଇଥାଏ । ଚାଳଘର କାନ୍ଥରେ ଥିବା ଠଣାରେ ବା କଡ଼ି ବରଗା ତଳେ, କୋଠାଘରର ସ୍କାଇଲାଇଟ୍‌ରେ କିମ୍ବା ବହିଥାକ କଣରେ ସେମାନେ ବସା ବାନ୍ଧନ୍ତି । ଏହି ବସାରେ ମାଈ ଘରଚଟିଆ ଥରକରେ ତିନୋଟିରୁ ପାଞ୍ଚଟି

ଅଣ୍ଡା ଦିଏ । ଫିକା, ପାଉଁଶିଆ ରଙ୍ଗର ଅଣ୍ଡା । ଅଣ୍ଡା ଦେବାର ୧୪ଦିନ ଭିତରେ ଛୋଟ ଛୋଟ ବାଟି ଆକୃତିର ଛୁଆଗୁଡ଼ିକ ବାହାରି ଖପର ଖପର ହୋଇ ଦେଖିବାରେ ଲାଗନ୍ତି ।

ଆଉ ଏକ ପ୍ରକାରର ଚଟିଆ ଅଛନ୍ତି; ଯାହାକୁ ହଳଦୀକଣ୍ଠୀ ଚଟିଆ କୁହାଯାଏ । ଏହାର ଶରୀର ଉପର ପଟର ରଙ୍ଗ ମାଟିଆ ବାଦାମୀ । କିନ୍ତୁ ବେକ ପାଖରେ ସବୁଜ ହଳଦୀ ରଙ୍ଗର ଦାଗଟିଏ ଥାଏ । ମାଈ ପକ୍ଷୀର ବେକରେ ଏହି ହଳଦୀ ଦାଗ ନଥାଏ । ଏହି ପକ୍ଷୀଗୁଡ଼ିକ ଗଛ କୋରଡ଼ରେ ଅଣ୍ଡା ଦିଅନ୍ତି ଏବଂ ବିଶେଷ କରି ଗଛରେ ରୁହନ୍ତି । ଫୁଲର ରେଣୁ ଖାଇବାରେ ଏମାନଙ୍କର ବଡ଼ ଆଗ୍ରହ ।

ମାଟି ଉପରେ ବିଛୁ ହୋଇ ପଡ଼ିଥିବା ଧାନ, ଗହମ ଆଦି ଶସ୍ୟ ଓ ବୀଜ ଘରଚଟିଆ ମାନଙ୍କର ମୁଖ୍ୟ ଆହାର । ଶୀତଋତୁରେ ବହୁ ସଂଖ୍ୟାରେ ଘରଚଟିଆ ଏକଯୁଟ ହୋଇ ଶସ୍ୟକ୍ଷେତ୍ର ନିକଟରେ ଚରୁଥିବାର ଦେଖାଯାଏ । ବିଲରେ ପାଚିଥିବା ଧାନ, ଗହମ ଓ ଡାଲି ଜାତୀୟ ଶସ୍ୟ ଖାଇଦେଇ ସେମାନେ କୃଷକର ବିସ୍ତର କ୍ଷତି କରିଥାନ୍ତି । ଗଛର କଅଁଳ କାଣ୍ଡ ଓ ଫୁଲ କଢ଼କୁ ମଧ ଘରଚଟିଆ ଖାଇ ନଷ୍ଟ କରିଦିଏ । କୃଷକ ଓ ବାଡ଼ି ବଗିଚାରେ ପନିପରିବା ଚାଷ କରୁଥିବା-ଗୃହସ୍ଥ ଏହି ପକ୍ଷୀଟିକୁ ଭଲ ଆଖିରେ ଦେଖିପାରନ୍ତି ନାହିଁ ।

ଥରେ ଏହି କାରଣରୁ ଚୀନ୍ ଦେଶରେ ଘରଚଟିଆ ବଂଶକୁ ସଂପୂର୍ଣ୍ଣ ନିପାତ କରିବାକୁ ନିଷ୍ପତ୍ତି ନିଆଗଲା । ସେତେବେଳେ ସମସ୍ତେ ଭାବୁଥିଲେ, ଘରଚଟିଆ ବହୁତ ପରିମାଣରେ ଫସଲ ଖାଇ ନଷ୍ଟ କରି ଦେଉଥିବାରୁ, ଯଦି ସେମାନଙ୍କର ବଂଶ ଲୋପ କରି ଦିଆଯାଏ ତେବେ ଅଧିକ ଫସଲ ଅମଳ ହୋଇପାରିବ । ଏହି ଲକ୍ଷ୍ୟରେ ଘରଚଟିଆ ମାନଙ୍କୁ ଚୀନ୍‌ରେ ମାରି ଦିଆଗଲା ।

କିନ୍ତୁ ଶେଷରେ ଫଳ ହେଲା ଓଲଟା । ଫସଲ ଅମଳ ଅଧିକ ହେବା ପରିବର୍ତ୍ତେ କମିବାକୁ ଲାଗିଲା । ଏହାର କାରଣ ହେଲା, ଘରଚଟିଆମାନେ ଫସଲ ଖାଇବା ସଙ୍ଗେ ସଙ୍ଗେ; ଶସ୍ୟ କ୍ଷେତ୍ରରେ ଥିବା କୀଟପତଙ୍ଗମାନଙ୍କୁ ମଧ ମାରି ଖାଇ ଦେଉଥିଲେ । ବିଶେଷ କରି ମାଆ ଘରଚଟିଆ ଛୁଆମାନଙ୍କୁ ଆହାର ଦେବାପାଇଁ ସଂବାଳୁଆ ଓ ଛୋଟ ଛୋଟ କଅଁଳିଆ କୀଟମାନଙ୍କୁ ସଂଗ୍ରହ କରି ଆଣିଥାଏ । ଚୀନ୍‌ରେ ଘରଚଟିଆ ମାନଙ୍କର ସଂଖ୍ୟା କମିଯିବାରୁ, ଏହି ଅନିଷ୍ଟକାରୀ କୀଟ ପତଙ୍ଗମାନଙ୍କର ସଂଖ୍ୟା ବଢ଼ିବାକୁ ଲାଗିଲା ଏବଂ ସେମାନେ ଆଗ ତୁଳନାରେ ଫସଲର ଅଧିକ କ୍ଷତି କଲେ । ପରେ ଯାହା ହେଉ, ଏହା ଜଣାପଡ଼ିବାରୁ ସେ ଦେଶରେ ଘରଚଟିଆ ମାରଣ ନୀତି ବନ୍ଦକରି, ସେମାନଙ୍କୁ ସୁରକ୍ଷା ଦିଆଗଲା । ତେଣୁ ଫସଲ ନଷ୍ଟ କରୁଥିଲେ ମଧ, ଘରଚଟିଆ କୃଷକର ପ୍ରକାରାନ୍ତରେ ଘନିଷ୍ଠ ବନ୍ଧୁ ।

ଘରଚଟିଆ ଘର ଭିତରେ ହଳ ହଳ ହୋଇ ଉଡ଼ି ବୁଲନ୍ତି କିନ୍ତୁ ବାହାରେ ଖୋଲାଯାଗାରେଏମାନେ ପ୍ରାୟ ଦଳବଦ୍ଧ ହୋଇ ଉଡ଼ନ୍ତି । ଧାନ ବା ଚାଉଳ ଗୋଲାନିକଟରେ କିମ୍ବା ପାଚିଲା ଶସ୍ୟକ୍ଷେତରେ ଦେଖିବ ଏମାନଙ୍କର ପଟୁଆର । ସବୁବେଳେ ଚିର୍ ଚିର୍ ଶବ୍ଦକରି ପରସ୍ପର ସହିତ ଝଗଡ଼ା କରୁଥାନ୍ତି । ବେଳେ ବେଳେ କଉତୁକରେ ମଧ ସେମାନେ ଗୋଡ଼ିଆ ଗୋଡ଼ି, ଖେଣ୍ଟିଆ ଖେଣ୍ଟି ହୁଅନ୍ତି । ଘରଚଟିଆ ପକ୍ଷୀର କଣ୍ଠସ୍ୱରଟି ନରମ ଓ ମିଠା ହୋଇଥିଲେ ମଧ, ଅବିଶ୍ରାନ୍ତ ଚିର୍ ଚିର୍ ଶବ୍ଦ କରୁଥିବାରୁ ବେଳେ ବେଳେ ଶ୍ରୁତି କଟୁ ଲାଗେ । ଏକ ଜାତିର ଚିଲ, ଘରଚଟିଆର ପ୍ରାଧାନ ଶତ୍ରୁ ।

ଉତ୍ତର ଭାରତରେ ଅନେକ ଲୋକକଥା ଓ କାହାଣୀ ଏହି ପକ୍ଷୀଟିକୁ ନେଇ ଶୁଣାଯାଏ । ସେହି ଅଞ୍ଚଳରେ କାଉ ସହିତ ଯେବେ ଘରଚଟିଆ, ଚାଳ

ଛାତରୁ ଡାକଦିଏ, ତେବେ ଘରକୁ କୁଣିଆ ଆସିବେ ବୋଲି କହନ୍ତି; କିମ୍ବା ଯୁଦ୍ଧ କ୍ଷେତ୍ରରୁ ସୈନିକଟିଏ ଘରକୁ ଫେରି ଆସୁଛି ବୋଲି ଧରିନିଆଯାଏ । ସେଥିପାଇଁ ବୁଢ଼ୀମା'ମାନେ ଘରଚଟିଆଙ୍କର ଆହାର ନିମନ୍ତେ ଭାତ, ଚାଉଳ ଆଦି ଫିଙ୍ଗିଥାନ୍ତି । ରନ୍ଧା ଖାଦ୍ୟ ମଧ ଘରଚଟିଆ ଆନନ୍ଦରେ ଖାଏ । ପିଲାମାନଙ୍କ ପାଇଁ ଟିକି ଡେଣାନେଇ ଉଡ଼ି ବୁଲୁଥିବା ଘରଚଟିଆଟି ବେଶ୍ କଉତୁକିଆ ମନେହୁଏ । ଏପରିକି ପିଲାଟିଏ ହାତ ପାପୁଲିରେ ଚାଉଳ ଦାନା କିମ୍ବା ରନ୍ଧା ଖାଦ୍ୟ ଧରି ଦେଖାଇଲେ, ଘରଚଟିଆ ଆସି ନିର୍ଭୟରେ ଆହାର ନେଇ ଚାଲିଯାଏ ।





# ବଣି ଚଢ଼େଇ

ସକାଳୁ ସକାଳୁ ନିତ୍ୟକର୍ମ ସାରି ଘରୁ ଦାଣକୁ ବାହାରିଲେ ଆଗ ନଜରରେ ପଡ଼େ ବଣି ଚଢ଼େଇ । ଦାଣପଟ ଅଗଣାରେ ଶୁଖାଯାଇଥିବା ଧାନ ଖୁଣ୍ଟିକରି ଖାଉଥାଏ । ନଚେତ୍ ଖଣ୍ଡିଉଡ଼ା ଦେଇ ଅଗଣାରୁ ଚାଳକୁ ଉଡ଼ି ବୁଲୁଥାଏ । ଗୋଟିଏ ବଣି ଚଢ଼େଇ ଦେଖିଲେ, ଆଉ ଗୋଟିଏ ଦେଖିବାକୁ ଆଖି ଖୋଜିବୁଲେ । ଢଗଟିଏ ମନେପଡ଼ିଯାଏ, 'ଯୋଡ଼ି ଯୋଡ଼ି, ବଣି ଯୋଡ଼ି' । ଅର୍ଥାତ୍, ହଳେ ବଣି ଚଢ଼େଇ ଦେଖିଲେ ଶୁଭ ହୋଇଥାଏ ।

ବଣି ଚଢ଼େଇ ଆକୃତିରେ ପାରାଠାରୁ ଛୋଟ । ପ୍ରାୟ ଅଧାଅଧି ହେବ । କାଉ, ଘରଚଟିଆ ଓ ପାରାପରି ଏହି ଚଢ଼େଇଟି ମଧ୍ୟ ବନବସତି ଭିତରେ ନିର୍ଭୟରେ ବସବାସ କରେ । ଗାଡ଼ି, ମଟର ପେଁ ପାଁ ଶବ୍ଦ, ଗାନା, ବାଜଣାର କୋଳାହଳ ତାପାଇଁ କିଛି ଫରକ୍ ପଡ଼େ ନାହିଁ । ବଣି ଚଢ଼େଇଟି ଗୋଟିଏ ସାମାଜିକ ପକ୍ଷୀ କହିଲେ ଅଣୁକ୍ତି ହେବ ନାହିଁ । ଶୁଆ ସାରୀ ପରି ଏହି ଚଢ଼େଇକୁ ମଧ୍ୟ ପିଞ୍ଜରାରେ ପୋଷାଯାଏ ।

ପିଲାଦିନେ ମୁଁ ଓ ଅନ୍ୟ ଗୋଟିଏ ସାଙ୍ଗ ସ୍କୁଲ ଫେରନ୍ତା ରାସ୍ତାରେ ଗୋଟିଏ ବରଗଛ କୋରଡ଼ରୁ ଦୁଇଟି କୁନି, କୁନି ବଣିଛୁଆ ଧରି ଆଣିଥିଲୁ । ସେଥିରୁ ମୁଁ ଗୋଟିଏ ଆଣି ପାଳିଲି ଓ ଅନ୍ୟ ଛୁଆଟି ସାଙ୍ଗ ନେଇଗଲା । ପ୍ରଥମେ ଦିନେ, ଦୁଇଦିନ ତାକୁ କେବଳ ଦୁଧ ଓ ପାଣି ପିଇବାକୁ ଦେଉଥିଲି । ତାପରେ ଦୁଧ ଓ ବତୁରା ଚୁଡ଼ା ଚକଟି କରି ଖାଇବାକୁ ଦେଲି । ସ୍କୁଲ ଯିବା ପୂର୍ବରୁ ଓ ସ୍କୁଲରୁ ଫେରିବା ପରେ ମୁଁ କେବଳ ବଣି ଛୁଆଟି ପିଛା ଧରିଥାଏ । କିନ୍ତୁ ଏତେ ଯତ୍ନ ସତ୍ତ୍ୱେବି ଛୁଆଟି ପ୍ରାୟ ଛଅ ସାତ ଦିନପରେ ମରିଗଲା । ସେଠାରୁ ବଣିଛୁଆଟି ମରିଯିବା ଖବର ପାଇ, ମୋର ସାଙ୍ଗଟି ସେ ପାଳିଥିବା ଛୁଆଟିକୁ ନେଇ ପୁଣି ଉକ୍ତ ବରଗଛ କୋରଡ଼ରେ ରଖିଦେଇ ଆସିଲା । ଏହି ଘଟଣା ପରଠାରୁ ମୁଁ ଆଉ କୌଣସି ଦିନ, ବାହାରେ ସ୍ୱାଧୀନ ଭାବରେ ଉଡ଼ି ବୁଲୁଥିବା ପକ୍ଷୀଙ୍କୁ ଧରିଆଣି ପିଞ୍ଜରାରେ ଆବଦ୍ଧ କରି ପାଳିବାକୁ ଇଚ୍ଛା କରିନାହିଁ । ସ୍ୱଚ୍ଛନ୍ଦରେ ମନଖୁସିରେ ଉଡ଼ି ବୁଲୁଥିବା ପକ୍ଷୀକୁ ପିଞ୍ଜରାରେ ବନ୍ଦ କରିବା କାହିଁକି ?

ଆମର ଅତି ପରିଚିତ ବଣି ଚଢ଼େଇ ଦେଖିବାକୁ ଡଉଲ-ଡାଉଲ ତାଜା ରଂଗର ପକ୍ଷୀଟିଏ । ଦେହର ରଙ୍ଗ ଗାଢ଼ ବାଦାମୀ । ମୁଣ୍ଡ କଳା । ଗୋଡ଼, ଥଣ୍ଟ ଓ ଆଖି ଚାରିପଟେ ହଳଦିଆ ରଙ୍ଗ । ପକ୍ଷୀଟି ଉଡ଼ିଲାବେଳେ, ତା'ର ଡେଣାର ତଳପଟେ ଥିବା ଧଳାରଙ୍ଗର କିଛି ଅଂଶ ସ୍ପଷ୍ଟ ଦେଖାଯାଏ ।

ଦେଶୀ ବଣିଚଢ଼େଇ କାଉ ପରି ସାହସୀ । କିନ୍ତୁ କାଉଟିଏ ପିଣ୍ଡା ଉପରକୁ ଆସିଲେ, ଯେପରି ଲୋକେ ତାକୁ ଦୁର୍‌ଦୁର୍ ମାର୍ ମାର୍ କରନ୍ତି, ବଣି ଚଢ଼େଇକୁ ସେପରି କରନ୍ତି ନାହିଁ । ବରଂ ସ୍ୱାଧୀନଭାବରେ ସେ ଘର, ବାରଣ୍ଡା ବା ପିଣ୍ଡା ଉପରେ ବିଚରଣ କରିଥାଏ । ଦେଶୀ ବଣି ଚଢ଼େଇର ରଙ୍ଗ ଗାଢ଼

ବାଦାମୀ ନହୋଇ ଫିକା ଧୂସର ହୋଇଥାଏ । ଆଖି ଚାରିପଟେ ଥିବା ପରହୀନ ଚମତ୍କାର ରଙ୍ଗ ହଳଦିଆ ପରିବର୍ତ୍ତେ ଇଟାପରି ଲାଲ ହୋଇଥାଏ ।

ବଣିଚଢ଼େଇ ପଡ଼ିଆରେ ବୁଲିବୁଲି ପୋକ ଜୋକ ଖାଇବାର ଦୃଶ୍ୟ ସାଧାରଣତଃ ଦେଖିବାକୁ ମିଳିଥାଏ । ବଗିଚାରେ ପାଣି ଦିଆଯାଇଥିଲେ ଜିଆଖାଇବାପାଇଁ ଏବଂ ବର୍ଷାପରେ ମାଟିରୁ ବାହାରି ଉଡ଼ି ବୁଲୁଥିବା ଝଡ଼ିପୋକ ଖାଇବାପାଇଁ ସେମାନେ ମେଳବାନ୍ଧି ବୁଲନ୍ତି । ପୋକ, ଜୋକ ଓ ଟିକ୍କ ଖାଇବା ନିମନ୍ତେ ଏମାନେ ଚରୁଥିବା ଘାଇ ଗୋରୁଙ୍କ ପିଛା କରନ୍ତି । କୃଷକ ବିଲରେ ହଳ କରୁଥିବାବେଳେ ବଣି ଚଢ଼େଇ ତାର ପିଛା କରୁଥାଏ । ହଳ ସମୟରେ ମାଟି ଭିତରୁ ବାହାରୁଥିବା କ୍ଷତିକାରୀ କୀଟପତଙ୍ଗମାନଙ୍କୁ ଗୋଡ଼େଇ ଗୋଡ଼େଇ ଖାଏ । ଏହି କାରଣରୁ ବଣି ଚଢ଼େଇକୁ କୃଷକର ବନ୍ଧୁ ହିସାବରେ ଗ୍ରହଣ କରାଯାଏ । ଅତୀତରେ କରାଯାଇଥିବା ଏକ ସର୍ଭେରୁ ଜଣାଯାଇଛି, ଯେତେବେଳେ ବିଲରେ ବିହନ ବୁଣାଯାଏ, ବଣି ଚଢ଼େଇ ସେ ସମୟରେ ଦୈନିକ ପ୍ରାୟ ୩୦ ଗ୍ରାମ ଅର୍ଥାତ୍ ମାସକୁ ପ୍ରାୟ ଏକ କିଲୋଗ୍ରାମ୍ ଓଜନର କୀଟ ପତଙ୍ଗ ଖାଇଥାନ୍ତି । ନିଜର ଛୁଆମାନଙ୍କୁ ମଧ୍ୟ ପୋକଜୋକ୍ ଆହାର ଦେଇଥାନ୍ତି । ଏହି ହିସାବରେ ସେମାନେ କିପରି ଭାବେ ଅନିଷ୍ଟକାରୀ ପୋକଜୋକଙ୍କ ସଂଖ୍ୟା ନିୟନ୍ତ୍ରଣ କରୁଛନ୍ତି, ତାହା ସହଜରେ ଅନୁମେୟ । ଏହି କାରଣରୁ ବଣି ଚଢ଼େଇକୁ ପରିବେଶର ସୁରକ୍ଷାକାରୀ ଭାବେ ମଧ୍ୟ ଗଣା ଯାଇଥାଏ ।

ପୋକ, ଜୋକ, କୀଟ ପତଙ୍ଗ ଆଦି ଆମିଷ ଆହାର ସଙ୍ଗେ ସଙ୍ଗେ ବଣି ଚଢ଼େଇ ନିରାମିଷ ଆହାର ମଧ୍ୟ କରିଥାଏ । ସେ ବର, ଓସ୍ତ ଓ ଡିମିରି ଗଛର ଫଳ ଏବଂ ଧାନ ଇତ୍ୟାଦି ଶସ୍ୟ ମଧ୍ୟ ଖାଇଥାଏ । ବେଳେବେଳେ

ଦେଖାଯାଏ, ଅନିଷ୍ଟକାରୀ କୀଟପତଙ୍ଗ ଖାଇ ବଣି କୃଷକର ଯେତେ ଉପକାର କରେ, ଶସ୍ୟ ବା ଫସଲ ଖାଇ ତାଠାରୁ ଅଧିକ କ୍ଷତି ମଧ କରିଥାଏ । ଏ ସଂପର୍କରେ ଅନେକ ବର୍ଷ ତଳେ ଗୋଟିଏ ଘଟଣା ମଧ ଘଟିଥିଲା । ଦକ୍ଷିଣ ଆଫ୍ରିକା, ମରିସସ୍ ଓ ନ୍ୟୁଜିଲ୍ୟାଣ୍ଡ ଦେଶରେ ଦେଖାଗଲାଯେ, ଅତ୍ୟଧିକ କୀଟପତଙ୍ଗ ସେମାନଙ୍କର ଫସଲ ସବୁ ନଷ୍ଟ କରି ଦେଉଛନ୍ତି । ତେଣୁ ସେମାନେ ଆମ ଦେଶରୁ ହଜାର ହଜାର ବଣି ସଂଗ୍ରହ କରି ସେଠରେ ଛାଡ଼ିଲେ । ଏହା ଫଳରେ କୀଟପତଙ୍ଗମାନଙ୍କର ସଂଖ୍ୟା ନିଶ୍ଚିତ ଭାବରେ କମିଗଲା; କିନ୍ତୁ ବଣି ଚଢ଼େଇଙ୍କର ସଂଖ୍ୟା ଏତେ ବଢ଼ିଗଲାଯେ, ସେମାନେ ନିଜେ ଫସଲ ପାଇଁ ହାନିକାରକ ସାବ୍ୟସ୍ତ ହେଲେ । ପରେ ସେ ଦେଶର ଲୋକମାନେ ଏପରି କାର୍ଯ୍ୟ ପାଇଁ ପସ୍ତେଇଲେ । କୀଟପତଙ୍ଗ ଓ ଶସ୍ୟ ଛଡ଼ା ବଣି ମଧ ଘର ବାହାରେ ଫିଙ୍ଗା ଯାଇଥିବା ବଳକା ଖାଦ୍ୟ ପଦାର୍ଥ, ଛିଣ୍ଡା ପାଉଁରୁଟି ଇତ୍ୟାଦି ଖାଇଥାନ୍ତି । ଏହି କାରଣରୁ ଦେଖାଯାଏ, ହଳେ ବା ଦୁଇହଳ ବଣି ଗୋଟିଏ ଘରକୁ ନିଜର ବୋଲି ଗ୍ରହଣ କରିନେଇ ଅନ୍ୟ ଅନାହୂତ ପ୍ରବେଶକାରୀ ବଣିମାନଙ୍କ ସହିତ ଘମାଘୋଟ ଲଢ଼େଇ କରିଥାଏ ।

ବସନ୍ତଋତୁ ଆସିଗଲେ, ଏମାନେ ହଳହଳ ହୋଇ ବସା ବାନ୍ଧିବାରେ ଲାଗିପଡ଼ନ୍ତି । ମଣିଷ ମାନଙ୍କ ପରି ପୁରୁଷ ଓ ମାଈ ପକ୍ଷୀ ସାରାଜୀବନପାଇଁ ଏକାଠି ବାନ୍ଧି ହୋଇ ରହନ୍ତି । ରାଜବଣି ସାଧାରଣତଃ ଜନବସତି ଅଞ୍ଚଳକୁ ଆଦରି ନେଇଥିବାରୁ ଯେ କୌଣସି ସ୍ଥାନରେ ସେ ବସା ନିର୍ମାଣ କରିପକାଏ । ଗଛ କୋରଡ଼, ଘର କାନ୍ଥରେ ଥିବା ଗାତ ବା ଓରା ସନ୍ଧିରେ ବଣିବସା ଦେଖିବାକୁ ମିଳିଥାଏ । ଏପରିକି ଅବ୍ୟବହୃତ ପୁରୁଣା ଆଲମିରା ଓ ପୁରୁଣା ଚିଠି ବାକ୍ସ ଖୋଲି ଦେଲାବେଳକୁ ଦେଖାଯାଏଯେ, ବଣି ଦମ୍ପତିଟିଏ ସେଠି ନୀଡ଼ ରଚନା କରି ରହିଛନ୍ତି । ବସାଗୁଡ଼ିକ ଆଦୌ ସଫା ସୁତୁରା ନୁହେଁ । କାରଣ ଛିଣ୍ଡାକାଗଜ,

ଛିଣ୍ଡାକନା, କାଠି କୁଟା ଓ ଅନ୍ୟାନ୍ୟ ଅଳିଆ ଜିନିଷକୁନେଇ ସେ ତାର ବସା ତିଆରି କରେ । ମାଈ ବଣି ଥରକେ ଚାରି, ପାଞ୍ଚୋଟି ଅଣ୍ଡାଦିଏ । ଅଣ୍ଡାଗୁଡ଼ିକ ଦେଖିବାକୁ ଚକ୍ ଚକ୍ ନୀଳ । ଉଭୟ ବାପା ଓ ମା' ପକ୍ଷୀ ଅଣ୍ଡା ଉଷୁମାଇବା କାମରେ ଲାଗିଯାନ୍ତି ଏବଂ ଅଣ୍ଡାରୁ ଫୁଟି ବାହାରିଲାପରେ ଛୁଆମାନଙ୍କର ଯତ୍ନ ନିଅନ୍ତି ।

କୁହାଳିଆ ବୋଲି ବଣି ଚଢ଼େଇର ନାଁ ରହିଛି । କାରଣ ଅନେକ ସମୟରେ ଏମାନେ କିଚିରି ମିଚିରି ଶବ୍ଦ କରୁଥାନ୍ତି ଓ ପରସ୍ପର ସହିତ ଝଗଡ଼ାରେ ଲିପ୍ତ ଥାଆନ୍ତି । ଯେପରି ହଠାତ୍ ଏମାନେ ଝଗଡ଼ା ଆରମ୍ଭ କରିଦିଅନ୍ତି, ସେପରି ହଠାତ୍ ମଧ ଶାନ୍ତ ପଡ଼ିଯାନ୍ତି । ଏହି ଝଗଡ଼ାରେ କାହାର କୌଣସି କ୍ଷତି ହୁଏନାହିଁ । ବିଶେଷ କରି ବସା ବାନ୍ଧିବା ସମୟରେ ଅର୍ଥାତ୍ ପ୍ରଜନନ ଋତୁରେହିଁ ଏହି ଝଗଡ଼ା ଘଟିଥାଏ । ବିପଦବେଳେ ବଣିଚଢ଼େଇ ଯଥେଷ୍ଟ ଏକତା ପ୍ରଦର୍ଶନ କରିଥାନ୍ତି । କୌଣସି ବଡ଼ ପକ୍ଷୀ ଆକ୍ରମଣ କରିବାର ସୁରାକ୍ ପାଇଲେ ଏମାନେ ଏକାଠି ହୋ ହଲ୍ଲା ଆରମ୍ଭ କରି ଦିଅନ୍ତି । ପଡ଼ିଆ ବା ବିଲରେ ସାପଥିବାର ସନ୍ଧାନ ମଧ ଏମାନଙ୍କର କୋଳାହଳରୁ ଜଣାପଡ଼େ । ସଂଜ ହେଲେ ଗଛଡାଳରେ ବା ଟେଲିଗ୍ରାଫ୍ ତାର ଉପରେ ଏମାନେ ଏକାଠି ବସି ବଡ଼ ପାଟିରେ କଥାବାର୍ତ୍ତା ହେଲାପରି ଶବ୍ଦ କରନ୍ତି । ରାତି ହେଲାପରେ ସେମାନଙ୍କର କୋଳାହଳ ଶାନ୍ତ ପଡ଼େ ।

ବଣି ଚଢ଼େଇ ପରିବାରର ଆଉ ଏକ ସଦସ୍ୟ ଅଛି । ତାହା ହେଉଛି ପାହାଡ଼ି ବଣି ବା ଶାରୀ । ଏହି ପକ୍ଷୀଟି ବେଶ୍ ପୋଷାମାନେ । ଅନେକଙ୍କ ଘରେ ଶୁଆ ଓ ଶାରୀ ପିଞ୍ଜରାରେ ପୋଷା ଯାଇଥାନ୍ତି । ଓଡ଼ିଶାର କେନ୍ଦୁଝର ଓ ମୟୁରଭଞ୍ଜର ଶିମିଳି ପାହାଡ଼ ଜଙ୍ଗଲରେ ବହୁତ ଶାରୀ ଅଛନ୍ତି । ଶାରୀ ଦେଖିବାକୁ

ପ୍ରାୟ ସାଧାରଣ ବଣି ଆକୃତିର । ରଙ୍ଗ କିନ୍ତୁ ଚିକ୍‌କଣ ଗାଢ଼ କଳା । ଥଣ୍ଟ ଓ ଗୋଡ଼ର ରଙ୍ଗ ହଳଦିଆ । ପାହାଡ଼ିଆ ଜଙ୍ଗଲ ଅଞ୍ଚଳରେ ଶାରୀମାନେ ରହନ୍ତି । ଗଛ କୋରଡ଼ରେ ବସା ବାନ୍ଧନ୍ତି । ମୁଖ୍ୟତଃ ଏମାନେ ବଣର ଫଳ, କୋଳି ଓ ଫୁଲର ମହୁଖାଇ ବଞ୍ଚନ୍ତି । ଏହି ପକ୍ଷୀଟି ମନୁଷ୍ୟ ତଥା ଅନ୍ୟାନ୍ୟ ଜୀବଜନ୍ତୁଙ୍କ ସ୍ୱରକୁ ଖୁବ୍ ଦକ୍ଷତାର ସହିତ ନକଲ ବା ଅନୁକରଣ କରିପାରେ । ପିଞ୍ଜରାରେ ରହି କଥା ଶିଖାଇଲେ, ଏମାନେ ମଣିଷ ପରି କଥା ମଧ କହନ୍ତି । ଏମାନଙ୍କର କଣ୍ଠସ୍ୱର ମଧୁର । ଘରେ ପିଞ୍ଜରାରେ ପୋଷିଥିବା ଶାରୀକୁ ଅଟାଦଳା ଓ ଦୁଧ ଭାତ ଚକଟା ଖାଇବାକୁ ଦିଆଯାଏ । ଶୁଆ, ଶାରୀଙ୍କ ଜରିଆରେ ଅନେକ ଶିକ୍ଷଣୀୟ ବିଷୟ ଆମର ପ୍ରାଚୀନ ଲୋକକଥାରେ ଗଳ୍ପ ଆକାରରେ କୁହାଯାଇଛି । ଏଗୁଡ଼ିକ 'ଶୁଆ-ଶାରୀ' କାହାଣୀ ନାମରେ ପ୍ରଖ୍ୟାତ ।

କଥା ଦେଇ କଥା ରଖି ପାରେନି ବୋଲି ବଣିର ଏକ ଦୁର୍ନାମ ଅଛି । ବଣି ଚଢ଼େଇର ଦେହ ତୁଳନାରେ ଗୋଡ଼ ଯୋଡ଼ିକ ଦେଖିବାକୁ ବେଶ୍ ସୁନ୍ଦର । ହଳଦୀ ଗୁରୁଗୁରୁ ରଂଗ । ତେଣୁ ଉତ୍ତର ଭାରତରେ ଏକ ଲୋକକଥା ଅଛିଯେ, କୌଣସି ଏକ ବିବାହ ଉତ୍ସବକୁ ଯିବାପାଇଁ ବଣି ଚଢ଼େଇ ମୟୁର ପକ୍ଷୀଠାରୁ ତା'ର ଗୋଡ଼ଯୋଡ଼ିକ ଧାରମାଗି ଆଣିଥିଲା ଓ ପରେ ତାକୁ ଆଉ ଫେରାଇଲା ନାହିଁ । ସେଥିପାଇଁ ବେଶ୍ ଆକର୍ଷକ ଆଖି ଓ ରଂଗ ବେରଙ୍ଗର ପକ୍ଷୀ ଥିବା ସତ୍ତ୍ୱେ ମୟୁରର ଗୋଡ଼ ଯୋଡ଼ିକ କଦାକୃତି ଓ ଅସୁନ୍ଦର । ଅଥଚ, ତାଠାରୁ ଧାର ନେଇ ଆସିଥିବା ବଣିର ଗୋଡ଼ ଯୋଡ଼ିକ ସୁନ୍ଦର । ଏମିତି ଅନେକ ଲୋକକଥା ଓ କାହାଣୀ ବଣି ଚଢ଼େଇ ନାଁରେ ଶୁଣିବାକୁ ମିଳେ । ଏଥିରୁ ଆମ ଗାଁ ଗହଳିର ପିଲାମାନଙ୍କ ପାଖରେ ବଣି ଚଢ଼େଇ ଯେ କେତେ ପ୍ରିୟ ଓ ପରିଚିତ, ତାହା ସହଜରେ ଅନୁମାନ କରାଯାଇପାରେ ।





# ପେଚା

ରାତି ଅଧରେ ଘର ପଛପଟ ଗଛ ଡାଳରେ ପେଚାଟିଏ ବୋବାଇଲେ, ଆମ ମନରେ ଛାନିଆ ପଶିଯାଏ । ଏହାକୁ ଏକ ଅଶୁଭ ସଂକେତ ବୋଲି ଗାଁ ଗହଳିରେ ଧରାଯାଏ । ସେହିପରି ରୋମାନ ଦେଶରେ ମଧ୍ୟ ପେଚା ଦୁର୍ଭାଗ୍ୟର ପ୍ରତୀକ ରୂପେ ପରିଗଣିତ । ଏପରିକି ଦିନବେଳା ସେଠିକାର କୌଣସି ସହରରେ ପେଚାକୁ ମାରିଲେ, ତାକୁ ନିଆଁରେ ପୋଡ଼ି ତାର ପାଉଁଶକୁ ଟାଇବର ନଦୀରେ ପକାଇ ଦେଉଥିଲେ । ସେକ୍ସପିୟରଙ୍କ ମ୍ୟାକ୍‌ବେଥ ନାଟକରେ ମୃତ୍ୟୁର ସୂଚନା ଦେଉଥିବା ପକ୍ଷୀ ରୂପେ ପେଚାକୁ ଚିତ୍ରଣ କରାଯାଇଛି । କିନ୍ତୁ ୟୁରୋପର ଅନେକ ଦେଶରେ ପେଚାକୁ ଜ୍ଞାନୀ ରୂପେ ଗଣନା କରାଯାଇଥାଏ । ପ୍ରାଚୀନ ଗ୍ରୀକ୍‌ରେ ପେଚାକୁ ଜ୍ଞାନ ଦେବୀ ରୂପେ ମାନନ୍ତି । ସେଥିପାଇଁ ପ୍ରାଚୀନ ଗ୍ରୀକର ମୁଦ୍ରାରେ ଗୋଟିଏ ପଟେ ଅଧିଷ୍ଠାତ୍ରୀ ଦେବୀ ଏଥେନ୍‌ସଙ୍କର ଛବି ଥିଲାବେଳେ, ଅନ୍ୟପଟେ ପେଚାର ଛବି ଦେଖିବାକୁ ମିଳେ; ଆମ ଦେଶରେ ଯେପରି ସିଂହର ମୁଣ୍ଡକୁ ଅଶୋକ ସ୍ତମ୍ଭରେ ଜାତୀୟ ପ୍ରତୀକ ରୂପେ ନିଆଯାଇଛି, ସେହିପରି ପେଚା ଏଥେନ୍‌ସର ଜାତୀୟ ପ୍ରତୀକ । ଆମ ସଂସ୍କୃତିରେ ପେଚା ଲକ୍ଷ୍ମୀଙ୍କର ବାହନ ରୂପେ ମଧ୍ୟ ପୂଜା ପାଇଥାଏ ।

ଅନ୍ୟ ପକ୍ଷୀମାନଙ୍କ ଠାରୁ ଗଢ଼ଣ ଓ ଆଚାର ବ୍ୟବହାରରେ ପେଚା ସଂପୂର୍ଣ୍ଣ ଭିନ୍ନ । ଏହା ଏକ ନିଶାଚର ପକ୍ଷୀ । ଅନ୍ୟ ପକ୍ଷୀମାନେ ଦିନରେ ଆନନ୍ଦରେ ଉଡ଼ି ବୁଲୁଥିଲା ବେଳେ, ସେ ରାତିରେ ବାହାରିବାକୁ ଅଧିକ ପସନ୍ଦ କରେ । ପେଚାର ଆଖି ଦୁଇଟି ହିଁ ଅନ୍ୟ ପକ୍ଷୀଙ୍କର ଆଖି ଠାରୁ ଭିନ୍ନ । ଏଗୁଡ଼ିକ ଆକୃତିରେ ବଡ଼, ଗୋଲାକାର ଓ ଠିକ ମଣିଷର ଆଖିପରି ମୁହଁର ସମ୍ମୁଖ ଭାଗରେ ଥାଏ । ଆମମାନଙ୍କ ପରି ପେଚା ମଧ୍ୟ ମୁହଁ ବୁଲାଇ ପଛକୁ ଦେଖିପାରେ । ଅନ୍ୟ ପକ୍ଷୀମାନଙ୍କର ଆଖି ଦୁଇଟି ମୁହଁର ଦୁଇପଟେ ଥାଏ; ଏବଂ ସେମାନେ ଏକ ସମୟରେ ମାତ୍ର ଗୋଟିଏ ଆଖିରେ ଦେଖିପାରନ୍ତି । ବୋଧହୁଏ ପେଚାର ଏହି ଦୁଇଟି ଗୋଲାକାର ଆଖିରୁ ହିଁ ମନେହୁଏ, ଯେପରି ସେ ସବୁ ଦେଖିପାରୁଛି; ଏବଂ ସେହି କାରଣରୁ ମଧ୍ୟ ସବୁ ଜାଣିପାରୁଛି । ଏଥିପାଇଁ ପକ୍ଷୀମାନଙ୍କର କାନ ଦୁଇଟି ଦେହର ପର ଭିତରେ ଲୁଚି ଯାଇଥାଏ ।

ରାତି ହେଲେ ପେଚାର କାର୍ଯ୍ୟକଳାପ ଆରମ୍ଭ ହୋଇଥାଏ । ତାର ଶରୀରର ସମସ୍ତ ଅଂଶ ଏହି ନିଶାଚର କାମ ପାଇଁ ଉପଯୁକ୍ତ । ପ୍ରଥମଟି ପେଚାର ରାବ । ରାତିରେ ପେଚାର ଏହି ଗୁରୁଂ ଗମ୍ଭୀର ଧ୍ୱନି ଶୁଣିଲେ ଅନ୍ୟ ଜୀବମାନେ ମଧ ଭୟଭୀତ ହୋଇ ପଡ଼ନ୍ତି । କୌଣସି ଜୀବ ସାନାନ୍ୟ ଖୁଡ଼୍‌ଖାଡ଼୍ ଶବ୍ଦ କଲେ ମଧ୍ୟ ତାହା ପେଚା କାନରେ ଧରାପଡ଼ିଯାଏ । ଥରେ ଶବ୍ଦ ବାରି ନେଲା ପରେ ରାତିର ଅନ୍ଧାରରେ ମଧ୍ୟ ପେଚା ଦେଖିପାରେ । ପେଚାର ବଡ଼ ବଡ଼ ଆଖି ଡୋଳା ଇଲାଷ୍ଟିକ ପରି ଟାଣି ହୋଇଯାଏ । ଏହା ଅନ୍ଧାର ରାତିରେ ଯାହା ସାମାନ୍ୟ ଆଲୋକର ସଙ୍କେତ ଦେଇଥାଏ । ଅନ୍ଧାରରେ ରହିଥିବା କୌଣସି ବସ୍ତୁ ଉପରେ ପେଚାର ସ୍ଥିର ଦୃଷ୍ଟି କେନ୍ଦ୍ରୀଭୂତ ହୋଇଯାଏ ଓ ତତ୍‌କ୍ଷଣାତ୍ ବସ୍ତୁର ଆକୃତି ତାକୁ ଦୃଶ୍ୟ ହୋଇଥାଏ ।

ପେଚା ଏକ ଶିକାରୀ ପକ୍ଷୀ । ଶିକାର କରିବାର କୌଶଳ ମଧ୍ୟ ତାକୁ ଜଣା । ତାର ପଞ୍ଝାଗୁଡ଼ିକ ଶକ୍ତ ଏବଂ ଛୁଞ୍ଚି ପରି ତୀକ୍ଷ୍ଣ । ଯନ୍ତାର ଦାନ୍ତ ପରି ତାହା ଶିକାର ଉପରେ ଚାପି ହୋଇଯାଏ । ପେଚାର ପକ୍ଷ ମଧ୍ୟ ତାକୁ ଶିକାର କରିବାରେ ସହାୟକ ହୋଇଥାଏ । ଏଗୁଡ଼ିକ ଏତେ ନରମ ଓ ହାଲ୍‌କା ଯେ, ପେଚା ନିଃଶବ୍ଦରେ ରାତିରେ ଉଡ଼ିଯାଏ ଓ ଶିକାର ଉପରେ ଝାମ୍ପିପଡ଼େ । ମୁହଁ ସଞ୍ଜ ବେଳେ ବା ଜହ୍ନରାତିରେ ପେଚା ସବୁଠୁଁ ଭଲ ଶିକାର କରେ । କିଛି ଦୂରରେ ମୂଷାଟିଏ ଦଉଡ଼ିଗଲେ ମଧ୍ୟ ସେ ଶବ୍ଦ ବାରିପାରେ । ଶବ୍ଦ ବାରିବା ସମୟରେ ପେଚା ନିଜର ଡେଣା ଓ ପକ୍ଷୀକୁ ମେଲାଇ ଦିଏ । କାନ ଉପରେ ଘୋଡ଼େଇ ହୋଇରହିଥିବା ଚମଡ଼ା ମଧ୍ୟ ପ୍ରସାରିତ ହୋଇଯାଏ । ଏହାଫଳରେ କାନକୁ କେନ୍ଦ୍ର କରି ଏହି ଡେଣା ଏକ ଚୁଙ୍ଗା ବା କାହାଳୀ ସଦୃଶ କାମ କରେ । ଏହା ଯେକୌଣସି କ୍ଷୀଣ ଶବ୍ଦକୁ ଗ୍ରହଣ କରି କାନରେ ପହଞ୍ଚାଇ ଦିଏ । ଅନ୍ୟ ପକ୍ଷୀମାନଙ୍କ ପରି ପେଚା ତାର ଶିକାରକୁ ଖଣ୍ଡ ଖଣ୍ଡ କରି ଖାଏନାହିଁ, ବରଂ ଏକାଥରକେ ଗିଳିଦିଏ । ମୂଷା, ଗୁଣ୍ଡୁଚି ମୂଷା ଓ ଛୋଟ ଠେକୁଆ ଆଦି ସେ ଶିକାର କରିଥାଏ । ମୂଷା ଶିକାର କରିବା ପାଇଁ ମୂଷାମରା ଯନ୍ତ୍ର ଠାରୁ ମଧ୍ୟ ପେଚା ଅଧିକ ଫଳପ୍ରଦ । ଏହି କାରଣରୁ ପେଚା କୃଷକର ଉପକାରୀ ବନ୍ଧୁ ଓ କୃଷି ଉତ୍ପାଦନ ବୃଦ୍ଧିରେ ସାହାଯ୍ୟ କରିଥାଏ । ଫସଲରେ ଲାଗୁଥିବା କୀଟପତଙ୍ଗ ଓ ପୋକଜୋକଙ୍କୁ ମଧ୍ୟ ସେମାନେ ଖାଇଯାନ୍ତି ।

ଅନେକ ପ୍ରକାରର ପେଚା ଆମ ଦେଶରେ ଦେଖାଯାନ୍ତି । କିନ୍ତୁ ସାଧାରଣତଃ ଦେଖିବାକୁ ମିଳୁଥିବା ପେଚା ମଧ୍ୟରୁ ଗୋଟିଏ ହେଉଛି ରାଜପେଚା । ଏହି ପେଚାର ରଙ୍ଗ ଧୂସର ବାଦାମୀ ଓ ଦେହସାରା ଧଳା ଟିପିଟିପିଆ ଚିହ୍ନ ପଡ଼ିଥାଏ । ଆଖି ଯୋଡ଼ିକ ସୁନ୍ଦର ହଳଦିଆ । ଆକାର ବଣି ପରି, ମାତ୍ର ଦେଖିବାକୁ ତା'ଠାରୁ ମୋଟା । ଖୋଲା ସମତଳ ଅଞ୍ଚଳ, ପର୍ବତର ପାଦଦେଶ,

ଏପରିକି ଜନବସତି ଭିତରେ ମଧ୍ୟ ରାଜପେଚା ସୁରୁଖୁରୁରେ ବାସ କରିବାର ଦେଖାଯାଏ । ପୁରୁଣା ଆମ୍ବ ବା ବରଗଛର କୋରଡ଼ରେ ଏମାନେ ରହନ୍ତି । ପେଚା ସାଧାରଣତଃ ନିଜର ବସା ନିର୍ମାଣ କରେନାହିଁ । ଶାଗୁଣା ବା ଚିଲମାନଙ୍କର ପରିତ୍ୟକ୍ତ ବସାରେ ସେମାନେ ରହିଯାନ୍ତି । ଗଛ କୋରଡ଼ରେ ଅଣ୍ଡା ଦିଅନ୍ତି । ଗଛର କୋରଡ଼ରେ ଏକ ବା ଦୁଇଯୋଡ଼ା ରାଜପେଚା ରହନ୍ତି । ପେଚା ବାସକରୁଥିବା ଗଛ ନିକଟକୁ ଯାଇ ଗଣ୍ଡିରେ ଠକ୍ ଠକ୍ ଶବ୍ଦ କଲେ କୋରଡ଼ ମୁହଁରେ ଦୁଇଟି ମୁହଁ ଦେଖାଯାଏ । ବେଳେ ବେଳେ ବେଶୀ କୋଳାହଳହେଲେ, ସେମାନେ ନିକଟ ଡାଳକୁ ଉଡ଼ିଯାଇ ବିଦୂଷକ ପରି ମୁଣ୍ଡକୁ ହଲାଇ ତୁମ ଆଡ଼କୁ ଅପଲକ ନେତ୍ରରେ ଚାହିଁ ରହିଥିବେ । ତାଙ୍କର ସ୍ଥିର ଚାହାଣୀରୁ ମନେ ହେବ, ଯେପରି ସେମାନେ ତୁମ ଉପରେ ଖୁବ୍ ରାଗି ଯାଇଛନ୍ତି । କିନ୍ତୁ ଏକଥା ସତ ଯେ ଅନ୍ୟ ପକ୍ଷୀ ଯେପରି ମଣିଷକୁ ଦେଖିଲେ ଡରିଯାଆନ୍ତି, ପେଚାମାନେ ସେପରି ଡରନ୍ତି ନାହିଁ । ଆଖିକୁ ଆଖି ମିଳାଇ ଚାହିଁ ରହନ୍ତି ।

ଦିନସାରା ଲୁଚି ରହିବା ପରେ ଗୋଧୂଳି ବା ମୁହଁସଞ୍ଜ ବେଳକୁ ଏମାନେ ପଦାକୁ ବାହାରି କୌଣସି ବାଡ଼ର ଖୁମ୍ବ ବା ଟେଲିଗ୍ରାଫ ତାର ଉପରେ ଜାକିଜୁକି ହୋଇ ବସି ରହନ୍ତି । ଭୂଇଁ ଉପରେ ଚାଲୁଥିବା ବା ଉଡୁଥିବା ଝିଣ୍ଟିକା ଝଡ଼ିପୋକ ଓ ଅନ୍ୟ ପୋକଜୋକଙ୍କୁ ଦେଖିଲେ ନିଃଶବ୍ଦରେ ଉଡ଼ିଯାଇ ଧରି ଆଣନ୍ତି । ଏଣ୍ଡୁଅ ପରି ଛୋଟ ଛୋଟ ସରୀସୃପ ଏବଂ ମୂଷା ଓ ଛୋଟ ପକ୍ଷୀମାନଙ୍କୁ ମଧ୍ୟ ଖାଇଥାନ୍ତି ।

ସାଧାରଣରେ ଦେଖିବାକୁ ମିଳୁଥିବା ଅନ୍ୟ ଏକ ପେଚା ହେଉଛି 'କାଳପେଚା' ଏହାକୁ ଉଲୂକ ମଧ୍ୟ କୁହାଯାଏ । ଦେହର ରଙ୍ଗ ଘନ ବାଦାମୀ । ଆକୃତିରେ ମାଟିଆଚିଲ ପରି । ଦେହସାରା କଳାରଙ୍ଗର ଦାଗ ଓ ଗାର ପଡ଼ିଥାଏ । ମୁଣ୍ଡ ଉପରେ ଥିବା କାନ ଦୁଇଟି ଶିଙ୍ଗ ପରି ଦେଖାଯାଏ । ଏହାର ଗୋଡ଼ ଗୁଡ଼ିକ

ପରରେ ଆବୃତ । ଦିନବେଳା କାଳପେଚା ବୃଦାତଳେ, ଭୂମି ଉପରେ ବା ନଈକୂଳର ଛାଇ ଜାଗାରେ ପଥର ଉପରେ ବସିଥାଏ । ସୂର୍ଯ୍ୟସ୍ତ ବେଳକୁ ଲୁଚିବା ସ୍ଥାନରୁ ବାହାରି ଏହା ଏକପ୍ରକାର ଗମ୍ଭୀର ଧ୍ୱନି କରେ । ଏହି ଶବ୍ଦ ବହୁ ଦୂରକୁ ଶୁଣାଯାଏ । କୃଷି ହେଉଥିବା ଅଞ୍ଚଳରେ ମିଳୁଥିବା ପଡ଼ିଆ ମୂଷା ସେମାନଙ୍କର ମୁଖ୍ୟ ଆହାର । ଏହାଛଡ଼ା ଛୋଟ ଛୋଟ ସ୍ତନ୍ୟପାୟୀ ପ୍ରାଣୀ, ଛୋଟପକ୍ଷୀ ଓ ଏଣ୍ଡୁଅ ଜାତୀୟ ସରୀସୃପ ମଧ୍ୟ ସେମାନେ ଶିକାର କରିଥାନ୍ତି । ଫସଲ ନଷ୍ଟ କରୁଥିବା କୀଟପତଙ୍ଗ ଓ ମୂଷାମାନଙ୍କୁ ମାରି ଖାଉଥିବାରୁ ଫସଲ ସଂରକ୍ଷଣରେ ଏମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏମାନେ ନୀଡ଼ ରଚନା କରନ୍ତି ନାହିଁ । ମାଟି ବନ୍ଧର ନିଭୃତ ସ୍ଥାନରେ ବା ପଥର ଖୋଲରେ ଅଣ୍ଡା ଦିଅନ୍ତି ।

ଅନ୍ୟ ଏକ ହଳଦିଆ, ଧୂସର ରଙ୍ଗର ପେଚା ଦେଖାଯାନ୍ତି । ଯାହାଙ୍କର ଦେହସାରା କଳା ଓ ଧଳା ରଙ୍ଗର ଚୋପାଚୋପା ଚିହ୍ନ ଥାଏ । ପେଟତଳର ରଙ୍ଗ ସଫା ଧଳା ଓ ସେଥିରେ ବାଦାମୀ ରଙ୍ଗର ଟିପିଟିପି ଚିହ୍ନ । ମୁଣ୍ଡଟି ବଡ଼, ଗୋଲାକୃତି ଓ ଦେଖିବାକୁ ଗୋଲ କାନ୍ଥଘଣ୍ଟା ସଦୃଶ । ବିଶେଷକରି ଧାନଗୋଲା, ଅମାର ବା ଧାନକୋଠି ମାନଙ୍କରେ ଏମାନେ ରହୁଥିବାରୁ ଏମାନଙ୍କୁ Barn owin କୁହାଯାଏ । ଧାନ ଅମାର ଭିତରେ ପ୍ରଚୁର ମୂଷା ଓ ମୂଷାଛୁଆ ତାକୁ ଖାଇବାକୁ ମିଳିଥାଏ । ଏହାବ୍ୟତୀତ ପୁରାତନଜୀର୍ଣ୍ଣ ପ୍ରାସାଦ, ଭଙ୍ଗା ପରିତ୍ୟକ୍ତ କୋଠାଘରମାନଙ୍କରେ ମଧ୍ୟ ଏମାନେ ରହନ୍ତି । ଦିନିସାରା ଅନ୍ଧାରୁଆ ଘର କଣରେ ଚୁପ୍‌ଚାପ୍ ଛିଡ଼ାହୋଇ ରହିଥାନ୍ତି । ପରିତ୍ୟକ୍ତ କୋଠାଘରମାନଙ୍କରେ ରାତିରେ ଭୂତ ଚଳପ୍ରଚଳ କରୁଛି ବୋଲି ଯାହା କୁହାଯାଏ, ତାହା ଏହି ପେଚାମାନଙ୍କର ଫଡ଼ଫାଡ଼ ଶବ୍ଦ ଛଡ଼ା ଆଉ କିଛି ନୁହେଁ । ଏହି ପେଚାର ଶବ୍ଦ ବିଶେଷତଃ ଅମଙ୍ଗଳସୂଚକ ଓ ମୃତ୍ୟୁର ପୂର୍ବ ସୂଚନା ବୋଲି ଗାଁ ଗହଳିରେ ପ୍ରବାଦଅଛି ।

●



# ଚିଲ

ଛୋଟ ଛୋଟ ପିଲାମାନେ ଶଙ୍ଖଚିଲକୁ ଦେଖିଲେ ଗୀତ ଗାଇଥାନ୍ତି । ''ଶଙ୍ଖଚିଲ ଭାଇ, ନମସ୍କାର'' । ଶଙ୍ଖଚିଲ ମୁହଁ ଚାହିଁଲେ ସବୁକାର୍ଯ୍ୟ ଶୁଭ ହୋଇଥାଏ ବୋଲି ଗାଁ ଲୋକଙ୍କର ଧାରଣା ଅଛି ।

ଶିକାରୀ ପକ୍ଷୀମାନଙ୍କ ଭିତରେ ଚିଲ ଅନ୍ୟତମ । ଏଇ ଜାତିର ଅନ୍ୟ ପକ୍ଷୀଗୁଡ଼ିକ ହେଲେ ସାଗୁଣା, କାଉ, ବାଜପକ୍ଷୀ ଓ ଛଞ୍ଚାଣ । ଏମାନଙ୍କ ଭିତରୁ ଚିଲ ଓ ସାଗୁଣା ମୁଖ୍ୟତଃ ପଚା ମାଂସ ଓ ମଲା ଜୀବଜନ୍ତୁଙ୍କ ମାଂସ ଖାଇଥାନ୍ତି । କିନ୍ତୁ ଅନ୍ୟ ପକ୍ଷୀଗୁଡ଼ିକ ଯଥା କାଉ ଓ ଛଞ୍ଚାଣ ଯଥାକ୍ରମେ ଜୀବନ୍ତ ପ୍ରାଣୀ ଶିକାର କରିଥାନ୍ତି । ବିଭିନ୍ନ ପ୍ରକାର ପରିଚିତ ବାଜପକ୍ଷୀ ଭିତରୁ ମୁଖ୍ୟତଃ ଦୁଇପ୍ରକାର ଚିଲ ଯଥା ଶଙ୍ଖଚିଲ ଓ ମାଟିଆ ଚିଲ ଆମର ବେଶ୍ ଜଣାଶୁଣା । ମାଟିଆ ଚିଲ ଗୋଟିଏ ବଡ଼ ପକ୍ଷୀ । ଏହାର ବର୍ଣ୍ଣ ବାଦାମି । ଲମ୍ବ ପ୍ରାୟ ଦୁଇ ଫୁଟ । ଏହାର ଲାଞ୍ଜ ପ୍ରାୟ ଦୁଇ ଫାଳିଆ ହୋଇଥିବାରୁ ତାହା ଅନ୍ୟ ପରିଚିତ ପକ୍ଷୀମାନଙ୍କଠାରୁ

ସହଜରେ ବାରି ହୋଇପଡ଼େ । ଏହି ଜାତୀୟ ପକ୍ଷୀ ମୁଖ୍ୟତଃ ମନୁଷ୍ୟ ବସତି ନିକଟରେ, ହାଟ ବଜାର ଅଞ୍ଚଳରେ କିମ୍ବା ଧାନ ଓ ଆଖୁକ୍ଷେତ ନିକଟରେ ଦେଖିବାକୁ ମିଳନ୍ତି । କଂସେଇଖାନା, ମାଛ ମାଂସ ବଜାର, ପୋତାଶ୍ରୟ ବା ବନ୍ଦରମାନଙ୍କରେ ମଧ୍ୟ ମାଟିଆଚିଲ ବହୁ ସଂଖ୍ୟାରେ ଦେଖାଯାନ୍ତି ଏବଂ ଖାଦ୍ୟ ଟୁକୁରାଏ ପାଇଁ ଟାକି ବସିଥାନ୍ତି । ମାଟିଆ ଚିଲର ପକ୍ଷ ଦୁଇଟି ଶରୀରର ଅନ୍ୟ ଅଂଶ ତୁଳନାରେ ଅପେକ୍ଷାକୃତ କଳା । ମୁଣ୍ଡ ଓ ବେକ ପାଖ ସାମାନ୍ୟ ହଳଦିଆ ରଙ୍ଗର । ଥଣ୍ଟ ଓ ପଞ୍ଝା ଦେଖିବାକୁ ଗାଢ଼ କଳା । ଏହା ଏକ ମଇଳା ସଫାକାରୀ ପକ୍ଷୀ । ସହର ବଜାରର ଜନାକୀର୍ଣ୍ଣ ରାସ୍ତା ଉପରେ ମଲାମୂଷା ବା ମାଂସ ଟୁକୁରାଏ ପଡ଼ିଥିବା ଦେଖିଲେ ସେମାନେ ବିଦ୍ୟୁତ୍ ବେଗରେ ଝାମ୍ପମାରି ଉଠାଇ ନିଅନ୍ତି । ଏହି ସମୟରେ ଏମାନେ ଏପରି ସୁନ୍ଦର ଓ ସ୍ୱାଚ୍ଛନ୍ଦ୍ୟ ଗତିରେ ଗତି କରନ୍ତି ଯେ, ଜନ ଗହଳି ପୂର୍ଣ୍ଣ ରାସ୍ତାରେ ଯାଉଥିବା ଯାନବାହନ ବା ଲୋକମାନଙ୍କ ଦେହରେ ନବାଜି ପବନ ବେଗରେ ଆହାର ନେଇଆସନ୍ତି । ଏହାକୁ ଦେଖିଲେ ଆଶ୍ଚର୍ଯ୍ୟ ଲଗେ । ବେଳେବେଳେ ଏମାନେ କାଉ ଓ ଅନ୍ୟ ଛୋଟ ଛୋଟ ପକ୍ଷୀଙ୍କଠାରୁ ମଧ୍ୟ ଆହାର ଛଡ଼ାଇ ନେଇଥାନ୍ତି ।

କାଉପରି ଏମାନେ ମଧ୍ୟ ଘର ଅଗଣାକୁ ପଶିଆସି ଛୋଟ ପିଲାମାନଙ୍କ ହାତରୁ ପାଉଁରୁଟି, ବିସ୍କୁଟ୍ କିମ୍ବା ଫଳ ଆଦି ଛଡ଼ାଇ ନେଇଯାନ୍ତି । କେବଳ ଛୋଟ ପିଲାମାନଙ୍କ ହାତରୁ ନୁହେଁ, ବଡ଼ ମଣିଷଙ୍କ ହାତରୁ ମଧ୍ୟ ଚିଲ ମାଛ ଛଡ଼ାଇ ନେବାର ଦୃଷ୍ଟାନ୍ତ ଅଛି । ଏଇ କାର୍ଯ୍ୟରେ କାଉଠାରୁ ସେମାନେ ଅଧିକ ସାହସୀ । ମଲା ଜନ୍ତୁମାନଙ୍କ ମାଂସ ଛଡ଼ା ଏମାନେ ମଧ୍ୟ ମୂଷା, ବେଙ୍ଗ ଓ ଅନ୍ୟାନ୍ୟ ସରିସୃପମାନଙ୍କୁ ଖାଇଥାନ୍ତି । ବିଶେଷକରି ଅନ୍ୟାନ୍ୟ ପକ୍ଷୀମାନଙ୍କର ଛୁଆ ସେମାନଙ୍କର ପ୍ରିୟ ଖାଦ୍ୟ । ସେମାନଙ୍କର ଥଣ୍ଟ ଗୁଡ଼ିକ ମଜବୁତ୍ ଓ ବକ୍ର । ଥଣ୍ଟ

ଗୁଡ଼ିକ ମଧ ଶକ୍ତିଶାଳୀ । ସେମାନଙ୍କର ଦୃଷ୍ଟିଶକ୍ତି ଏତେ ତୀକ୍ଷଣ ଯେ ଆକାଶ ମାର୍ଗରୁ ମାଟି ଉପରେ ଚଳପ୍ରଚଳ ହେଉଥିବା ମୂଷା ବା ସରିସୃପମାନଙ୍କୁ ମଧ୍ୟ ସେ ଲକ୍ଷ୍ୟ କରିପାରନ୍ତି । ଶିକାରର ପଶ୍ଚାତ୍‌ଧାବନ ପାଇଁ ବେଗ ହାସଲ କରିବା ନିମିତ୍ତ ସେମାନଙ୍କର ପକ୍ଷୀ ଓ ଦେହ ଗଠିତ ହୋଇଅଛି । ମାଟିଆ ଚିଲ ସାଧାରଣତଃ ପ୍ରଚୁର ଖାଦ୍ୟ ମିଳୁଥିବା ଅଞ୍ଚଳରେ ବଡ଼ ବଡ଼ ତାଳଗଛ ମାନଙ୍କରେ ବସା କରିଥାନ୍ତି । ଡିସେମ୍ବର ମାସରୁ ମେ ମାସ ହେଉଛି ସେମାନଙ୍କର ପ୍ରଜନନ ଋତୁ । ଏହି ସମୟରେ ସେମାନେ ମାଟିଆ ଓ ଧୂସର ରଙ୍ଗର ଅଣ୍ଡା ଦେଅନ୍ତି । ମାଈ ଚିଲ ଥରକେ ଦୁଇଟିରୁ ତିନୋଟି ଅଣ୍ଡା ଦେଇଥାଏ ।

ଶୁଭ ସାଙ୍କେତିକ ଶଙ୍ଖଚିଲ ମାଟିଆ ଚିଲଠାରୁ ଅଧିକ ସୁନ୍ଦର । ଏହାର ଲମ୍ବ ପ୍ରାୟ ଦେଢ଼ଫୁଟ । ମାଟିଆ ଚିଲଠାରୁ ଅଳ୍ପଛୋଟ । ଦେହର ପିଠିପାଖ ମଳିନ ଲାଲ ରଙ୍ଗ, ମୁଣ୍ଡ, ବେକ ଓ ପେଟତଳ ଧଳା । ଛୁଆ ଅବସ୍ଥାରେ ଶଙ୍ଖଚିଲର ବର୍ଣ୍ଣ ଚକୋଲେଟ ରଙ୍ଗ ପରି ବାଦାମି । ଏହାର ଲାଞ୍ଜ ଗୋଲାକାର । ମାଟିଆ ଚିଲ ପରି ଦି ଫାଳିଆ ନୁହେଁ । ଲାଞ୍ଜର ଅଗ୍ରଭାଗ ଧଳା ।

ମାଛ ଶଙ୍ଖଚିଲର ପ୍ରିୟ ଖାଦ୍ୟ । ସେଥିପାଇଁ ଏମାନେ ନଈ ପୋଖରୀ ବା ଜଳାଶୟ ନିକଟରେ ବିଶେଷ ଦେଖାଯା'ନ୍ତି । ନଦୀ ପୋଖରୀ ବା ସମୁଦ୍ର କୂଳର ଗଛ ମାନଙ୍କରେ ବସା କରିଥାନ୍ତି । କେଉଟମାନଙ୍କର ଗାଁ ଏବଂ ମାଛଧରା ବନ୍ଦର ନିକଟରେ ମଧ ଏମାନେ ଦଳ ଦଳ ହୋଇ ଉଡ଼ି ବୁଲୁଥିବାର ଦେଖାଯାଏ । ବର୍ଷାଋତୁରେ ଯେତେବେଳେ ଧାନ ବିଲସବୁ ପାଣିରେ ବୁଡ଼ିଯାଏ । ସେତେବେଳେ ଶଙ୍ଖଚିଲ ବିଲ ଉପରେ ଚକ୍‌ର ମାରୁଥିବାର ଦେଖାଯାଏ । ଜଳ ଉପରୁ ଝାମ୍ପମାରି ଖାଦ୍ୟ ସଂଗ୍ରହ କରିବାକୁ ଏମାନେ ଭଲ ପାଆନ୍ତି । ମାଛଟିଏ ମରିଯାଇ ପାଣିରେ ଭାସୁଥିଲେ ଝମ୍ପମାରି ଉଠାଇ ନିଅନ୍ତି । ଏହାଛଡ଼ା ଏଣ୍ଡୁଅ,

ବେଙ୍ଗ ସାନ ସାନ କଙ୍କଡ଼ା ଓ କିଟପତଙ୍ଗ ମଧ୍ୟ ଏମାନେ ଖାଇ ଥାଆନ୍ତି । ଉଭୟ ମାଟିଆ ଚିଲ ଓ ଶଙ୍ଖଚିଲଙ୍କର ଝଡ଼ିପୋକ ଏକ ପ୍ରିୟ ଖାଦ୍ୟ । ବର୍ଷା ପରେ ଝଡ଼ିପୋକ ଉଡ଼ି ବୁଲୁଥିବା ବେଳେ ଶଙ୍ଖଚିଲ ଗୋଡ଼ାଇ ଗୋଡ଼ାଇ ତାକୁ ଶିକାର କରିଥାଏ । ଚିଲର ଅଣ୍ଡାଗୁଡ଼ିକ ମାଟିଆ ଚିଲର ଅଣ୍ଡାଠାରୁ ସାମାନ୍ୟ ଛୋଟ ଏବଂ ଅଣ୍ଡାର ରଙ୍ଗ ପାଟଳ ବର୍ଣ୍ଣମିଶା ଧଳା ।

ହିନ୍ଦୁ ପୁରାଣରେ ଭଗବାନ୍ ବିଷ୍ଣୁଙ୍କର ବାହାନ ରୂପେ ଯେଉଁ ଗରୁଡ଼ ପକ୍ଷୀର ବର୍ଣ୍ଣନା ରହିଛି ଶଙ୍ଖଚିଲ ସେହିମାନଙ୍କର ବଂଶଧର । ତେଣୁ ଶଙ୍ଖଚିଲଟିଏ ଦେଖିଲେ ଲୋକମାନେ ହାତଯୋଡ଼ି ନମସ୍କାର କରନ୍ତି । ସେହିପରି ଅନେକ କୁହନ୍ତି ଶଙ୍ଖଚିଲ ପାର୍ବତୀଙ୍କର ଅତି ପ୍ରିୟ । ସେଥିପାଇଁ ତାକୁ ଶଙ୍କରୀପ୍ରିୟା ବୋଲି ମଧ୍ୟ କୁହାଯାଏ । ମାଡ୍ରାସ୍ ନିକଟରେ ପକ୍ଷୀତୀର୍ଥ ବୋଲି ଏକ ଦର୍ଶନୀୟ ସ୍ଥାନ ରହିଛି । ପ୍ରତିଦିନ ଠିକ୍ ଦିନ ଦ୍ୱିପ୍ରହର ବେଳେ ଦୁଇଟି ଧଳା ଶଙ୍ଖଚିଲ ଆକାଶ ମାର୍ଗରେ ଉଡ଼ି ଉଡ଼ି ଆସି ସେଠାରେ ବସନ୍ତି ଏବଂ ସେମାନଙ୍କର ପୂଜାର୍ଚ୍ଚନାପାଇଁ ରଖାଯାଇଥିବା ଖାଦ୍ୟ ଖାଇ ନିଜ ଗନ୍ତବ୍ୟ ପଥରେ ଉଡ଼ିଯାଆନ୍ତି । ପ୍ରାୟ ଶହେବର୍ଷ ଏହି ଘଟଣା ପ୍ରତିଦିନ ଘଟୁଛି । ହଜାର ହଜାର ତୀର୍ଥଯାତ୍ରୀ ଏହି ଦୃଶ୍ୟ ଦେଖିବା ପାଇଁ ପ୍ରତିଦିନ ରୁଣ୍ଡ ହୁଅନ୍ତି । ସବୁଠାରୁ ଆଶ୍ଚର୍ଯ୍ୟକଥା ଏହି ଯେ ପ୍ରତିଦିନ ଠିକ୍ ଏକ ନିର୍ଦ୍ଦିଷ୍ଟ ସମୟରେ ସେମାନେ ତଳକୁ ଓହ୍ଲାଇ ଅସାନ୍ତି । କୌଣସିଦିନ କେହି ଦୁଇଟି ପକ୍ଷୀରୁ ଅଧିକ ଆସିବା ଦେଖି ନାହାଁନ୍ତି ।

ଉଭୟ ମାଟିଆଚିଲ ଓ ଶଙ୍ଖଚିଲ ଭାରତର ପ୍ରାୟ ସର୍ବତ୍ର ଦେଖାଯାଆନ୍ତି । ହିମାଳୟ ପାହାଡ଼ରେ ପ୍ରାୟ ୬୦୦୦ ଫୁଟ ଉଚ୍ଚତା ପର୍ଯ୍ୟନ୍ତ ଶଙ୍ଖଚିଲ ଦେଖାଯାଇଥାନ୍ତି । ଶୀତଦିନେ ଏମାନେ ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ଭ୍ରମଣରେ ଯାଆନ୍ତି । ତେଣୁ ଏମାନଙ୍କୁ ସ୍ଥାନୀୟ ପରିବ୍ରାଜକ

ପକ୍ଷୀ ହିସାବରେ ଗଣାଯାଇପାରେ । ପାଣି ନିକଟରେ ଥିବା ବଡ଼ ବଡ଼ ବର, ଓସ୍ତ ବା ସେହିପରି ବଡ଼ ଗଛମାନଙ୍କରେ ଏମାନେ ସୁନ୍ଦର ବସାମାନ ତିଆରି କରିଥାନ୍ତି ଏବଂ ସବୁଜ ଘାସରେ ବସାକୁ ସଜାଇଥାନ୍ତି । ସେହି ବସା ଭିତରେ ଥରକେ ଦୁଇ ତିନୋଟି ଅଣ୍ଡା ଦିଅନ୍ତି ଏବଂ ଉଭୟେ ପୁରୁଷ ଓ ମାଈପକ୍ଷୀ ଛୁଆର ଯତ୍ନ ନେଇଥାନ୍ତି ।

ଶିକାରୀ ପକ୍ଷୀମାନଙ୍କ ଭିତରେ ଚିଲ ଆମର ଯେତେ କ୍ଷତି କରନ୍ତି ତା ଅପେକ୍ଷା ଅଧିକ ଉପକାର କରିଥାନ୍ତି । ଫସଲ ନଷ୍ଟକରୁଥିବା ମୂଷା ଆଦି ଅନେକ ଅନିଷ୍ଟକାରୀ ପ୍ରାଣୀ ଓ କୀଟପତଙ୍ଗ ମାନଙ୍କୁ ଖାଇ ଦେଉଥିବାରୁ ସେମାନଙ୍କର ସଂଖ୍ୟା ବଢ଼ିପାରେ ନାହିଁ । ଏହା ପ୍ରକାରାନ୍ତରେ କୃଷକର ଉପକାର କରିଥାନ୍ତି । ସେହିପରି ପଚାସଢ଼ା ମାଂସ ଓ ଅନ୍ୟ ମୃତ ଜୀବଜନ୍ତୁଙ୍କ ମାଂସ ଖାଇ ଦେଉଥିବାରୁ ସେମାନେ ମଇଳା ସଫାକାରୀ ଭାବରେ ମଧ୍ୟ ଜଣାଶୁଣା । ଏମାନେ ଅନ୍ୟ କେତେକ ଛୋଟ ଛୋଟ ପକ୍ଷୀ ଓ ସରିସୃପମାନଙ୍କୁ ମାରିଦେଉଥିବାରୁ ସେମାନଙ୍କୁ ପୀଡ଼କ ପ୍ରାଣୀ (Vermin) ତାଲିକାଭୁକ୍ତ କରାଯାଇଛି । ସେମାନଙ୍କୁ ମାରିବାରେ କୌଣସି ଆଇନଗତ ପ୍ରତିବନ୍ଧକ ନଥିବାରୁ ଦିନକୁ ଦିନ ଶଙ୍ଖଚିଲ ମାନଙ୍କର ସଂଖ୍ୟା କମି କମି ଆସୁଛି ।

